# ହସଖୁସି

ଲେଖକ :

ବିଭୂତି ପଟ୍ଟନାୟକ

ଶକ୍ତି ପ୍ରକାଶନୀ
ନନ୍ଦସାହି, ବାଖରାବାଦ
କଟକ-୭୫୩୦୦୨

# ହସଖୁସି


ଲେଖକ :

**ବିଭୂତି ପଟ୍ଟନାୟକ**



ପ୍ରକାଶକ :

**ଶଶି ପ୍ରକାଶନୀ**

ନନ୍ଦସାହି, ବାଖରାବାଦ

କଟକ-୭୫୩୦୦୨

ପ୍ରଥମ ପ୍ରକାଶ : ୧୯୯୧

ମୁଦ୍ରଣ

**ନନ୍ଦକିଶୋର ପ୍ରେସ୍**

ଭରଅପଡ଼ା, କଟକ-୨

ମୂଲ୍ୟ : ବାରଟଙ୍କା ମାତ୍ର

# କଥାଟିଏ କହୁଁ

'ହସଖୁସି' ଶିଶୁମାନଙ୍କ ପାଇଁ ରଚିତ ଏଗାରଟି କାହାଣୀର ସଙ୍କଳନ । ଏ ଗଳ୍ପ ବହିର ପାଣ୍ଡୁଲିପି ଓଡ଼ିଶା ସରକାରଙ୍କ ଶିକ୍ଷା ବିଭାଗ ଶିଶୁ ସାହିତ୍ୟ କମିଟି ଦ୍ୱାରା ଆୟୋଜିତ ପ୍ରତିଯୋଗିତାରେ ପୁରସ୍କୃତ ହୋଇଅଛି ।

ଏଥିରେ ଥିବା ଏଗାରଟିଯାକ ଗଳ୍ପ କେବଳ ଶିକ୍ଷଣୀୟ ନୁହେଁ; ଏହା ଯେପରି କ୍ଷୁଦ୍ର ପିଲାମାନଙ୍କ ପାଇଁ ଆକର୍ଷଣୀୟ ହୋଇପାରିବ, ସେଥିପ୍ରତି ମୁଁ ଯଥାସାଧ୍ୟ ଧ୍ୟାନ ଦେଇଛି ।

ଏ ସଚିତ୍ର ଗଳ୍ପ ଏଗାରଟି ପିଲାମାନଙ୍କ ମନକୁ ହସଖୁସିରେ ଭରି ଦେଇ ପାରିଲେ ମୋର ଶ୍ରମ ସାର୍ଥକ ହେବ ।

ବିଭୂତି ପଟ୍ଟନାୟକ

# ସୂଚୀପତ୍ର







# ଚଢ଼େଇ ହେଲେ କଣ ହେଲା

ଗୋଟିଏ ଦେଶରେ ଜଣେ ଧନୀ ବ୍ୟବସାୟୀ ଥିଲେ । ଦୂର ଦେଶକୁ ଯାଇ ସେ ବ୍ୟବସାୟ ବାଣିଜ୍ୟ କରନ୍ତି । ସେଥିରେ ତାଙ୍କର ବହୁତ ଲାଭ ହୁଏ । ସେହି ଲାଭ ଟଙ୍କାରେ ସେ ଅନ୍ୟ ଦେଶମାନଙ୍କରୁ ଭଲ ଭଲ ଜିନିଷ କିଣି ଘରକୁ ଆଣନ୍ତି ।

ସେ ଧନୀ ବେପାରୀଙ୍କର ଗୋଟିଏ ଶୁଆ ଥିଲା । ଶୁଆଟିକୁ ସେ ସୁନା ପିଞ୍ଜରାରେ ରଖିଥାଆନ୍ତି । ରୁପା ଗିନାରେ ଦୁଧଭାତ ଖାଇବାକୁ ଦିଅନ୍ତି । ଶୁଆ ଯାହା ଚାହେଁ, ତାହା ତାପାଇଁ ସଙ୍ଗେ ସଙ୍ଗେ କିଣି ଆଣନ୍ତି । ଶୁଆଟି ତାଙ୍କର ଭାରି ପୋଷା ମାନିଥାଏ ।

ଥରେ ସେ ଧନୀ ବେପାରୀ ଅନ୍ୟ ଦେଶକୁ ବ୍ୟବସାୟ କରି ବାହାରିଲେ । ଘରୁ ବାହାରିଲା-ବେଳେ ନିଜ ଘର ସମସ୍ତ ଲୋକଙ୍କୁ ଡାକିଲେ । କାହାପାଇଁ କି କି ଜିନିଷ ଆଣିବେ, ତାହା ସେ ସମସ୍ତଙ୍କୁ ଜଣ ଜଣ କରି ପଚାରିଲେ । କିଏ କେତେ ପ୍ରକାର ବରାଦ କଲେ । ଝିଅ କହିଲା, "ମୋ ପାଇଁ ମୁକ୍ତାର ଗୋଟିଏ ଚକ୍ ଚକ୍ ହାର ଆଣିବ । ମୁଁ ତାକୁ ବେକରେ ପିନ୍ଧିବି ।" ପୁଅ କହିଲା, "ମୋର ଗୋଟିଏ କଳା ଘୋଡ଼ା ଦରକାର । ମୁଁ ଘୋଡ଼ାରେ ବସି ବଣକୁ ଶିକାର କରି ଯିବି ।" ମାଆ କହିଲେ, "ପୁଅରେ ! ମୋ ପାଇଁ ଗୋଟିଏ ସୁନାର ଦେବତା ମୂର୍ତ୍ତି ଆଣିବୁ । ମୁଁ ତାକୁ ପୂଜା କରିବି ।"

ଧନୀ ବ୍ୟବସାୟୀ ସମସ୍ତଙ୍କ କଥା ଶୁଣିଲେ । ବେପାର କରିସାରି ଫେରିଲା ବେଳକୁ ସମସ୍ତଙ୍କ ବରାଦ ଜିନିଷ ଆଣିବେ ବୋଲି ହଁ ଭରିଲେ । ଶେଷରେ ତାଙ୍କର ମନେପଡ଼ିଲା ସେ ଶୁଆକୁ ସେ କିଛି ପଚାରି ନାହାନ୍ତି । ଶୁଆକୁ ସେ ଭାରି ଭଲପାଆନ୍ତି । ଶୁଆପାଇଁ କିଛି ନଆଣି ସେ ବିଦେଶରୁ ଫେରିବେ କେମିତି ?

ସେ ଶୁଆ ପାଖକୁ ଗଲେ । ଶୁଆ ସେତେବେଳକୁ ମନଦୁଃଖରେ ବସିଥାଏ । ପିଞ୍ଜରା ଫାଙ୍କ ବାଟେରୁ ନୀଳ ଆକାଶ ଆଡ଼କୁ ଅନାଇଥାଏ । ତା'ପରେ ଗୋଟାକୁ ଗୋଟା ଦୀର୍ଘ ନିଶ୍ୱାସ ପକାଉଥାଏ । ସତେ ଯେମିତି ଆକାଶରୁ କଣ ମନେ ମନେ ଖୋଜି ସେ କିଛି ପାଉ ନାହିଁ ।

ଧନୀ ବ୍ୟବସାୟୀ ଜଣକ ଶୁଆ ପାଖକୁ ଯାଇ ପଚାରିଲେ, 'ତୁ ମନଦୁଃଖ କରି ବସିଛୁ କାହିଁକି ? ମୁଁ ବିଦେଶକୁ ଯାଉଛି । ବ୍ୟବସାୟ ସାରି ଫେରିବି, ଫେରିଲା ବେଳକୁ ତୋ ପାଇଁ କଣ ଆଣିବି କହ ।"

ଶୁଆ ଧର୍ମ ବ୍ୟବସାୟୀଙ୍କ କଥା ଶୁଣି ମନେ ମନେ ହସିଲା । ତାଙ୍କ ଆଡ଼କୁ ଚାହିଁ କହିଲା, "ମୋ ପାଇଁ ତୁମେ କିଛି ଆଣିବା ଦରକାର ନାହିଁ । ତୁମେ ଗୋଟିଏ କାମ କରିବ । ତୁମେ ଯେଉଁ ଦେଶକୁ ଯାଉଛ, ସେ ଦେଶରେ ନିଶ୍ଚୟ ବଣ ଜଙ୍ଗଲ ଥିବ । ସେ ବଣ ଜଙ୍ଗଲରେ ନିଶ୍ଚୟ ଆହୁରି ଅନେକ ଶୁଆ ଥିବେ । ତୁମେ ସେ ଶୁଆଙ୍କୁ ଡାକି କହିବ, ତାଙ୍କ ଭଳି ଗୋଟିଏ ଶୁଆ ପିଞ୍ଜରାରେ ପଶି ଏଠାରେ ଅଛି । ତା'ପରେ ସେମାନେ ଯାହା କହିବେ, ତମେ ଆସି କହିବ । ମୋର ଆଉ କିଛି ଲୋଡ଼ା ନାହିଁ । ମୋର ଏତିକି ମାଗୁଣି ।"

ଶୁଆର ମାଗୁଣି ଶୁଣି ଧର୍ମ ବେପାରୀ ମନେ ମନେ ଆଶ୍ଚର୍ଯ୍ୟ ହେଲେ । ଶୁଆ ଆଉ କିଛି ଭଲ ଜିନିଷ ନ ମାଗି ଏ କଥା କାହିଁକି କହିଲା, ସେ କିଛି ବୁଝି ପାରିଲେ ନାହିଁ । ମନେ ମନେ ଭାବିଲେ ଶୁଆଟା ଭାରି ଗୋଟିଏ ଚତୁର, ଭଲ ଜିନିଷ ମାଗିବାକୁ ତା ମୁଣ୍ଡରେ ବୁଦ୍ଧି ଆସିବ କୁଆଡ଼ୁ । ସେ ଶୁଆ କଥା ଅନୁସାରେ ଅନ୍ୟ ଦେଶର ଶୁଆଙ୍କୁ ସବୁ କଥା କହିବେ ବୋଲି ଜବାବ ଦେଇ ଚାଲି ଆସିଲେ ।

ତା' ପରେ ସେ ନିଜ ଦେଶ ଛାଡ଼ି ବେପାର କରିବାକୁ ଅନ୍ୟ ଦେଶକୁ ଗଲେ ।

ବେପାରରେ ସେଥର ତାଙ୍କର ଖୁବ୍ ଲାଭ ହେଲା । ବେପାର ଶେଷ କରି ସେ ସଉଦା କରିବାକୁ ବାହାରିଲେ । ଘରେ ଯିଏ ଯାହା ବରାଦ କରିଥିଲେ, ସେଇ ଅନୁସାରେ ଜିନିଷପତ୍ର କିଣା ହେଲା । ଶେଷରେ ତାଙ୍କର ଶୁଆ କଥା ମନେପଡ଼ିଲା । ପୁଅ ପାଇଁ କିଣିଥିବା କଳା ଘୋଡ଼ାରେ ଚଢ଼ି ସେ ଜଙ୍ଗଲକୁ ବାହାରିଲେ ।

ଅନେକ ଦୂର ଗଲା ପରେ ଗୋଟିଏ ଅଗନାଅଗନ ବନସ୍ତ ପଡ଼ିଲା । ବହୁ କଷ୍ଟରେ ସେ ବନସ୍ତ ଭିତରେ ପଶି ପାରିଲେ ପରେ ଦେଖିଲେ ଗୋଟିଏ ଗଛରେ ଅନେକ ଗୁଡ଼ିଏ ଶୁଆ ବସିଛନ୍ତି । ମନକୁ ମନ ସୁନ୍ଦର ସୁନ୍ଦର ଗୀତମାନ ଗାଉଛନ୍ତି । ସେ ଶୁଆମାନଙ୍କୁ ଡାକି ଧର୍ମ ବେପାରୀ ଜଣକ କହିଲେ, "ହେ ଶୁଆମାନେ ! ତୁମେ ମୋ କଥା ଶୁଣ । ଆମ ଘରେ ତୁମ ଭଳି ଗୋଟିଏ ଶୁଆ ଅଛି । ସେ ତୁମ ପାଖକୁ ଗୋଟିଏ ଖବର ପଠାଇ ଅଛି । ସେ ଖବର ଶୁଣି ତୁମେ ଯାହା କହିବ, ମୁଁ ତାହା ଯାଇ ତା' ଆଗରେ କହିବି । ମୁଁ ସେ ଶୁଆକୁ ଗୋଟିଏ ଭଲ ସୁନା ପିଞ୍ଜରାରେ ବନ୍ଦ କରି ରଖିଛି ।"

ଏତେବେଳଯାଏ ଶୁଆମାନେ ସେ ବେପାରୀଙ୍କ କଥା ଶୁଣୁଥିଲେ । ସେ ଯେମିତି ତାଙ୍କ ଶୁଆଟି ସୁନା ପିଞ୍ଜରାରେ ବନ୍ଦ ହୋଇ ରହିଛି ବୋଲି କହିଲେ, ସେମିତି ଗୋଟିଏ ବୁଢ଼ା ଶୁଆ ହଠାତ୍ ଗଛ ଉପରୁ ତଳକୁ ଖସିପଡ଼ିଲା । ଧର୍ମ ବେପାରୀ ଏହାର କାରଣ କିଛି ବୁଝିପାରିଲେ ନାହିଁ । ବୁଢ଼ା ଶୁଆଟି ମରିଗଲା ବୋଲି ଭାବି ସେ ମନ ଦୁଃଖରେ ଫେରି ଆସିଲେ ।

ସେ ଘରେ ପହଞ୍ଚିଲାକ୍ଷଣି ତାଙ୍କ ପୁଅ, ଝିଅ ଓ ମାଆ ଆସି ତାଙ୍କ ପାଖରେ ହୁଣ୍ଡ ହୋଇଗଲେ । ଧନୀ ବେପାରୀ ଜଣକ ସେମାନଙ୍କ ପାଇଁ ଆଣିଥିବା ଜିନିଷ ସେମାନଙ୍କୁ ଦେଇଦେଲେ । ନିଜ ନିଜ ବରାଦ ଦେଇଥିବା ଜିନିଷମାନ ପାଇ ସେମାନଙ୍କର ଖୁସିର ସୀମା ରହିଲା ନାହିଁ । ଏମାନଙ୍କୁ ଜିନିଷପତ୍ର ଦେଇ ଖୁସି କରି ସାରିବା ପରେ ଧନୀଲୋକର ଶୁଆ କଥା ମନେପଡ଼ିଲା । ସେ ଶୁଆର ସୁନା ପିଞ୍ଜରା ପାଖରେ ଯାଇ ପହଞ୍ଚିଲେ ।



[ ବୁଢ଼ା ଶୁଆଟି ତଳକୁ ଖସିପଡ଼ିବା ବେପାରୀ ଦେଖୁଛନ୍ତି ]

ଶୁଆକୁ କହିଲେ, "ମୁଁ ତୋ କଥା କହିବା ପାଇଁ ଗୋଟିଏ ଅଗନାଅଗନ ବନସ୍ତକୁ ଯାଇଥିଲି । ସେଠାରେ ଅନେକ ଶୁଆ ଥିଲେ । ମୁଁ ତୋତେ ସୁନା ପିଞ୍ଜରାରେ କିପରି ଆନନ୍ଦରେ

ରହିଛୁ, ସେକଥା କହୁଥିଲି ବେଳେ ଗୋଟିଏ ବୁଢ଼ା ଶୁଆ ହଠାତ୍ ତଳେ ପଡ଼ିଗଲା । ସେମାନେ ମତେ ଆଉ କିଛି କହିଲେ ନାହିଁ ।"

ଧନୀ ବ୍ୟବସାୟୀଙ୍କ କଥା ଶୁଣୁ ଶୁଣୁ ପିଞ୍ଜରା ଭିତରେ ହଠାତ୍ ତାଙ୍କ ପୋଷା ଶୁଆଟି ପଡ଼ିଗଲା । ଧନୀ ଲୋକ ଜଣକ ଭାବିଲେ ବୋଧହୁଏ ଯେଉଁ ବୁଢ଼ା ଶୁଆଟି ସେଦିନ ବନସ୍ତରେ ଗଛରୁ ଖସିପଡ଼ିଥିଲା, ସେ ଏହି ଶୁଆର ବାପ ହେବ । ନିଜ ବାପର ମଲା ଖବର ଶୁଣି ଏ ଶୁଆଟି ମଧ୍ୟ ଦୁଃଖରେ ମରିଗଲା ।

ତାଙ୍କ ମନରେ ଭୀଷଣ କଷ୍ଟ ହେଲା । ସେ ପିଞ୍ଜରା ଖୋଲି ଶୁଆଟିକୁ ପଦାକୁ ବାହାର କରିଦେଲେ । ବାହାରକୁ ଆସିବାକ୍ଷଣି ଶୁଆଟି ଫୁରୁକିନା ଆକାଶକୁ ଉଡ଼ିଗଲା । ଉଡ଼ିଯାଇ ଗୋଟିଏ ଉଚ୍ଚ ଗଛଡାଳରେ ବସିଲା ।

ଧନୀ ଲୋକ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ତୁ ଏମିତି କାହିଁକି ପିଞ୍ଜରା ଭିତରେ ମଲାଭଳି ପଡ଼ିଗଲୁ ।"

ଡେଣା ଥରେ ଝାଡ଼ିଦେଇ ଶୁଆ କହିଲା, "ମୁଁ ତମ ହାତରେ ସେ ଦେଶର ଶୁଆମାନଙ୍କୁ ଯେଉଁ ଖବର ପଠାଇଥିଲି, ସେମାନେ ତା'ର ଠିକ୍ ଉତ୍ତର ଦେଇଛନ୍ତି । ପିଞ୍ଜରାରୁ ମୁକୁଳି ଆକାଶରେ ଉଡ଼ିବାକୁ ମୋ ମନ ଅଥୟ ହେଉଥିଲା । ମୁଁ କେମିତି ଏ ପିଞ୍ଜରାରୁ ମୁକ୍ତ ହେବି, ସେଇ ଉପାୟ ଜାଣିବା ପାଇଁ ମୁଁ ସେ ଦେଶର ଶୁଆଙ୍କୁ ତମ ହାତରେ ପଚାରି ପଠାଇ ଥିଲି । ତମ କଥା ଶୁଣି ଯେଉଁ ଶୁଆଟି ଗଛରୁ ଖସିପଡ଼ିଲା, ସେ ମତେ ବାଟ ବତାଇ ଦେଲା । ଗଛରୁ ପଡ଼ିଯାଇ ସେ ମତେ ଶିଖାଇ ଦେଲା ଯେ ମଲାଭଳି ପଡ଼ି ରହିଲେ ତୁମେ ମତେ ପିଞ୍ଜରାରୁ ମୁକୁଳାଇ ଦେବ । ତୁମେ ସେ କଥା ବୁଝି ପାରିଲ ନାହିଁ । ମତେ ସେ ଖବର ଆଣିଦେଲ । ତମ କଥା ଶୁଣି ମୁଁ ପିଞ୍ଜରା ଭିତରେ ପଡ଼ିଗଲି । ତୁମେ ଭାବିଲ ମୁଁ ମରିଗଲି । ମତେ ତୁମେ ପିଞ୍ଜରାରୁ ମୁକୁଳାଇ ଦେଲ । ଏଥର ମୁଁ ଯାଉଛି ।"

ଏତିକି କହିଦେଇ ଶୁଆଟି ଆକାଶ ଆଡ଼କୁ ଉଡ଼ିଗଲା ।

ଧନୀ ବେପାରୀ ଜଣକ ଏଥର ନିଜର ବୋକାମି ବୁଝିପାରିଲେ । ଦୀର୍ଘ ନିଶ୍ୱାସଟିଏ ପକାଇ ସେ ଭାବିଲେ, ଶୁଆଟା ଚଢ଼େଇଟିଏ ହେଲେ କଣ ହେବ, ମଣିଷଠାରୁ ସେ ବେଶୀ ଚତୁର ।





# ସମ୍ରାଟଠୁ ବଳି ଦାନୀ

ଆକବର ବାଦଶାହାଙ୍କ ନାମ ନ ଜାଣେ କିଏ ?

ଭାରତରେ ଯେତେ ମୋଗଲ ବାଦଶାହା ରାଜତ୍ୱ କରି ଯାଇଛନ୍ତି, ଆକବର ସେମାନଙ୍କ ମଧ୍ୟରେ ଶ୍ରେଷ୍ଠ । ଶତ୍ରୁକୁ ଜୟ କରିବାରେ ସେ ଯେମିତି ବୀର; ଭିକାରୀକୁ ଦାନ ଦେବା ପାଇଁ ମଧ୍ୟ ସେ ସେହିଭଳି ଦୟାଳୁ ଥିଲେ, ତେଣୁ ଲୋକେ ତାଙ୍କୁ ଭାରି ଭଲ ପାଉଥିଲେ । ଦାନୀ ବାଦଶାହା ହିସାବରେ ସେ ରାଜ୍ୟର ଚାରିଆଡ଼େ ଭାରି ଜଣାଶୁଣା ଥିଲେ ।

ଦିନେ ଜଣେ ଭିକାରି ବାଦଶାହାଙ୍କ ରାଜପ୍ରାସାଦ ପାଖରେ ପହଞ୍ଚିଲା । ଆକବରଙ୍କୁ ଭିକ୍ଷା ମାଗିଲେ ସେ କଦାପି ଖାଲି ହାତରେ ଫେରାଇ ଦେବେ ନାହିଁ ବୋଲି ସେ ଆଗରୁ ଶୁଣିଥିଲା । ତେଣୁ ସେ ଭାବିଲା, ବାଦଶାହାଙ୍କଠାରୁ ବେଶି କିଛି ଧନ ମାଗିନେଲେ, ସେ ସେଥିରେ ଜୀବନଯାକ ସୁଖରେ ଚଳିଯିବ । ଆଉ କାହାରି ଦ୍ୱାରକୁ ଯାଇ କେବେ ଭିକ ମାଗିବ ନାହିଁ ।

ସକାଳ ପହରୁ ଯାଇ ସେ ଦାନ ମାଗିବ ବୋଲି ରାଜ ଉଆସ ପାଖରେ ଜଗି ବସିଲା ସତେ; କିନ୍ତୁ ବାଦଶାହାଙ୍କ ସହିତ ତାର ଦେଖା ହୋଇପାରିଲା ନାହିଁ । ଉପର ଓଳି ବାଦଶାହାଙ୍କର ଜଣେ ଚାକର ସହିତ ତାର ଭେଟ ହେଲା । ସେ ଚାକରକୁ ପଚାରିଲା, "ଭାଇ ବାଦଶାହାଙ୍କଠାରୁ କିଛି ଦାନ ନେବି ବୋଲି ସକାଳ ପହରୁ ମୁଁ ଜଗି ବସିଅଛି; କିନ୍ତୁ ବାଦଶାହାଙ୍କର ମୋଟେ ଦେଖା ପାଉନାହିଁ । କିପରି ଭାବରେ ମୁଁ ତାଙ୍କୁ ସାକ୍ଷାତ କରିପାରିବି ମତେ ଟିକିଏ ଉପାୟ ବତେଇ ଦେଲ ।"

ବାଦଶାହାଙ୍କ ଚାକର ଭିକାରିକୁ କହିଲା, "ତୁମେ ଏଠାରେ ଦିନେ କାହିଁକି, ସାତଦିନ ଜଗି ବସିଲେ ସୁଦ୍ଧା ବାଦଶାହାଙ୍କ ଦେଖା ପାଇବ ନାହିଁ । ବର୍ତ୍ତମାନ ସନ୍ଧ୍ୟା ହୋଇ ଆସିଲାଣି । ବାଦଶାହା ବର୍ତ୍ତମାନ ମସଜିଦ୍‌କୁ ପ୍ରାର୍ଥନା କରିବା ପାଇଁ ଯିବେ । ସେ ପ୍ରାର୍ଥନା ଶେଷକରି ଫେରିଲାବେଳେ ତୁମେ ତାଙ୍କୁ ସାକ୍ଷାତ କରିପାରିବ ଏବଂ ଦାନ ମାଗିଲେ ସେ ତୁମକୁ ନିଶ୍ଚୟ କିଛି ନା କିଛି ଦାନ ଦେବେ ।"

ବାଦଶାହାଙ୍କ ଚାକରର କଥା ଭିକାରି ମନକୁ ବେଶ୍ ପାଇଗଲା । ସେ ମସ୍‌ଜିଦ ପାଖରେ ଯାଇ ସନ୍ଧ୍ୟାବେଳଠାରୁ ଜଗି ବସି ରହିଲା । ଠିକ୍ ସନ୍ଧ୍ୟାବେଳକୁ ବାଦଶାହା ଆକବର ମସ୍‌ଜିଦ ପାଖକୁ ଆସିଲେ । ମସ୍‌ଜିଦ ଭିତରକୁ ଯାଇ ହାତଯୋଡ଼ି ଭଗବାନଙ୍କୁ ପ୍ରାର୍ଥନା କଲେ ।

ଦୂରରେ ଥାଇ ଭିକାରି ବାଦଶାହାଙ୍କ ପ୍ରାର୍ଥନା ଦେଖୁଥିଲା । ସେ ହାତଯୋଡ଼ ପ୍ରାର୍ଥନା କଲାବେଳେ ଭିକାରି ଆଶ୍ଚର୍ଯ୍ୟ ହୋଇଗଲା । ଭାରତ ଭଳି ବିରାଟ ଦେଶର ଅଧୀଶ୍ୱର ହୋଇ ସୁଦ୍ଧା ବାଦଶାହା ହାତଯୋଡ଼ ପ୍ରାର୍ଥନା କରନ୍ତି ବୋଲି ଭିକାରି ଆଗରୁ ଜାଣିନଥିଲା ।



[ ମସଜିଦ୍ ସାମନାରେ ଭିକାରିଟି ବାଦଶାହାଙ୍କୁ ଭେଟୁଛି ]

କିଛି ସମୟ ପରେ ବାଦଶାହା ପ୍ରାର୍ଥନା ଶେଷ କରି ବାହାରକୁ ଓହ୍ଲାଇ ଆସିଲେ । ସିଡ଼ିରେ ଭିକାରି ସହିତ ତାଙ୍କର ଦେଖାହେଲା । ବାଦଶାହାଙ୍କୁ ପାଖରେ ଦେଖି ଭିକାରି ବିନୀତ ଭାବରେ ନମସ୍କାର କଲା !

ଭିକାରୀକୁ ଦେଖି ବାଦଶାହା ପ୍ରଶ୍ନ କଲେ, "ତୁମେ ମୋଠାରୁ କ'ଣ ଚାହଁ ?"

ଭିକାରି କହିଲା, "ଆପଣଙ୍କଠାରୁ କିଛି ଭିକ୍ଷା ନେବି ବୋଲି ମୁଁ ସକାଳପହରୁ ଆସିଥିଲି ।"

ବାଦଶାହା କହିଲେ, "ତାହାହେଲେ ତୁମେ କି ଭିକ୍ଷା ଚାହଁ, କୁହ । ତୁମେ ଯାହା ଚାହିଁବ, ମୁଁ ତାହା ଦେବାକୁ ପ୍ରସ୍ତୁତ ଅଛି ।"

ଭିକାରି ହସି ହସି କହିଲା, "ଆପଣଙ୍କ ପ୍ରାର୍ଥନା ଦେଖି ମୋର ଆଉ କିଛି ମାଗିବାର ନାହିଁ । ମୁଁ ଫେରିଯାଉଛି । ଆପଣଙ୍କଠାରୁ ଭିକ୍ଷା ମୋର ଲୋଡ଼ା ନାହିଁ ।"

ବାଦଶାହା ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନ କଲେ, "ମୋଠାରୁ ତୁମେ ଭିକ୍ଷା ନେବ ନାହିଁ କାହିଁକି ?"

ଭିକାରି କହିଲା, "ଆଜ୍ଞା ! ଅଳ୍ପ ସମୟ ପୂର୍ବରୁ ମୁଁ ଦେଖିଲି ଆପଣ ମସ୍‌ଜିଦ ମଧ୍ୟରେ ହାତଯୋଡ଼ି ଭଗବାନଙ୍କଠାରୁ ଆଶୀର୍ବାଦ ଭିକ୍ଷା କରୁଥିଲେ । ଯେ ଭିକ୍ଷା ମାଗେ, ସେ ଆଉ ଜଣେ ଭିକାରୀକୁ ଭିକ୍ଷା ଦେଇପାରିବ କୁଆଡ଼ୁ ? ଆପଣ ବାଦଶାହା ହୋଇ ମଧ୍ୟ ଭିକାରି; ତେଣୁ ଆପଣଙ୍କଠାରୁ ମୁଁ ଭିକ୍ଷା ଗ୍ରହଣ କରିପାରିବି ନାହିଁ ।"

ଭିକାରିର ଯୁକ୍ତି ଶୁଣି ବାଦଶାହା ଖୁସିହେଲେ । ତାକୁ ସ୍ନେହରେ କୁଣ୍ଢାଇ ପକାଇ ସେ କହିଲେ, "ତମେ ଠିକ୍ କହୁଛ, ଭାଇ ! ଭଗବାନ ହିଁ ଜଣେ ମାତ୍ର ଦାତା, ତାଙ୍କର ଦାନ ଓ ଦୟା ବଳରେ ଆମେ ସମସ୍ତେ ଜୀବନ ଧାରଣ କରୁଛୁ । ତୁମେ ତାଙ୍କୁ ଭକ୍ତି ବଳରେ ଭିକ୍ଷା ମାଗ । ସେ ଦୟାକଲେ ତମର ଏ ଦୁର୍ଦ୍ଦଶା ରହିବ ନାହିଁ ।"

ଏହା କହି ବାଦଶାହା ନିଜ ରାଜପ୍ରାସାଦକୁ ଫେରିଗଲେ । ଭିକାରି ମଧ୍ୟ ଖୁସି ହୋଇ ନିଜ କୁଟୀରକୁ ଲେଉଟି ଗଲା । ସେହିଦିନଠୁ ସେ ଭଗବାନଙ୍କ ପାଖରେ ନିତ୍ୟ ପ୍ରାର୍ଥନା କରେ । ଭିକାରି ବୋଲି ତାକୁ ଆଗରୁ ଯେଉଁମାନେ ଘୃଣା କରୁଥିଲେ, ତାର ଧର୍ମଭାବ ଦେଖି ସେମାନେ ତାକୁ ଆଦର କଲେ । ଜଣେ ଧାର୍ମିକ ଲୋକ ହିସାବରେ ତାର ଖ୍ୟାତି ଚାରିଆଡ଼େ ବ୍ୟାପିଗଲା ।





# ହୀରକଥା ଲୁଚି ରହେ ନାହିଁ

ମିଶର୍ ବୋଲି ଗୋଟିଏ ଦେଶ ଅଛି । ସେହି ଦେଶରେ ଜଣେ ବଡ଼ ଧନୀଲୋକ ଥିଲେ । ସେହି ଧନୀଲୋକଙ୍କ ପାଖରେ ଗୋଟିଏ ହୀରା ମୁଦି ଥିଲା । ସେ ହୀରା ମୁଦିଟି ତାଙ୍କୁ ଜଣେ ଫକିର ଉପହାର ଦେଇଥିଲେ ।

ଫକିର ଜଣକ ତାଙ୍କୁ ହୀରା ମୁଦିଟି ଦେଲାବେଳେ କହିଥିଲେ, "ଏ ମୁଦିଟିକୁ ସବୁବେଳେ ପାଖରେ ରଖିଥିବ । ଏ ହୀରା ମୁଦି ଯାହା ପାଖରେ ଥିବ ତାର ଧନ ସମ୍ପତ୍ତି ବଢ଼ିବ । ଘରେ ସୁଖ, ଶାନ୍ତି ବିରାଜିବ । ତାର କୌଣସି ଦୁଃଖ ରହିବ ନାହିଁ ।

ମିଶର୍ ଦେଶର ସେହି ଧନୀ ଲୋକଜଣକ ଫକିରଙ୍କର କଥା ମାନି ଚଳୁଥିଲେ । ସେ ସେହି ହୀରା ମୁଦିଟିକୁ କାହାରି ହାତକୁ ଦିଅନ୍ତି ନାହିଁ । ସବୁବେଳେ ମୁଦିଟିକୁ ନିଜ ପାଖରେ ରଖିଥାଆନ୍ତି । ସେହି ମୁଦି ଯୋଗୁ ତାଙ୍କ ଘରେ ଧନସମ୍ପତ୍ତି ହୁ' ହୁ' ହୋଇ ବଢ଼ିବାକୁ ଲାଗିଲା । କୌଣସି ପ୍ରକାର ଅଶାନ୍ତି ତାଙ୍କ ପରିବାରରେ ଦେଖାଦେଲା ନାହିଁ ।

କିଛି ଦିନ ପରେ ସେହି ଧନୀ ଲୋକଜଣକ ରୋଗରେ ପଡ଼ିଲେ । ତାଙ୍କର ସେ ରୋଗ ଆଉ ଭଲ ହେଲା ନାହିଁ । ସେ ଜାଣିପାରିଲେ ଯେ ତାଙ୍କର ମୃତ୍ୟୁସମୟ ପାଖେଇ ଆସିଲାଣି । ଏହା ବୁଝିପାରି ସେ ନିଜ ପୁଅ ଧନପତିକୁ ପାଖକୁ ଡକାଇ ପଠାଇଲେ । ପୁଅକୁ ପାଖରେ ବସାଇ କହିଲେ, "ବାବା ! ମୁଁ ତତେ ଗୋଟିଏ ହୀରା ମୁଦି ଦେଉଛି, ତୁ ସେ ମୁଦିକୁ ସବୁବେଳେ ନିଜ ପାଖରେ ରଖିଥିବୁ । ଅନ୍ୟ କାହାରି ହାତକୁ ଦେବୁ ନାହିଁ । ଏହି ହୀରାମୁଦି ଘରେ ଥିଲେ, ଧନସମ୍ପତ୍ତି ବଢ଼ିବ । ଦୁଃଖ କଷ୍ଟ କିଛି ଜଣା ପଡ଼ିବ ନାହିଁ । ପୁଣି ତୋ ମୃତ୍ୟୁ ବେଳକୁ ଯେ ମୁଦିଟିକୁ ତୋ ପୁଅକୁ ତୁ ଦେଇଯିବୁ ।"

ଏହା କହିସାରି ସେ ଧନୀଲୋକ ମୁଦିଟି ଧନପତିର ଆଙ୍ଗୁଳିରେ ପିନ୍ଧାଇ ଦେଲେ । କିଛି ସମୟ ପରେ ତାଙ୍କ ମୃତ୍ୟୁ ହୋଇଗଲା । ସେ ଧନୀଲୋକ ମଲାପରେ ଧନପତି ସେ ମୁଦିଟିକୁ ନିଜ ପାଖେ ପାଖେ ରଖିଲେ । ତାଙ୍କର ମଧ୍ୟ ଧନସମ୍ପତ୍ତି ବଢ଼ିବାକୁ ଲାଗିଲା ।

ଧନପତିଙ୍କର ତିନିପୁଅ । ସେ ତିନିପୁଅଙ୍କୁ ସମାନ ଭଲପାଆନ୍ତି । ଦିନେ ସେ ମନେ ମନେ ଭାବିଲେ, ମୋର ଦିନକାଳ ସରି ଆସିଲାଣି । ହୁଏତ ଆଉ ଅଳ୍ପ କିଛି ଦିନ ପରେ ମୁଁ ମରିଯିବି । ମୋର ତିନିପୁଅ; ତେବେ ଏ ମୁଦିକୁ କାହାକୁ ଦେଇଯିବି ?

ସେଥିପାଇଁ ସେ ଗୋଟିଏ କଥା ମନେ ମନେ ଠିକ୍ କଲେ । ଭିନ୍ ଦେଶର ଜଣେ ବଣିଆକୁ ସେ ଡକାଇଲେ । ବଣିଆକୁ କହିଲେ, ଦେଖ, ମୁଁ ମୋର ଚାରି ପୁଅଙ୍କୁ ଏକାଭଳି ଭଲପାଏ । ମୋ ପାଖରେ ଏହି ଗୋଟିଏ ହୀରାମୁଦି ଅଛି । ଏ ମୁଦି ଯାହା ପାଖରେ ରହିବ, ତାର ଧନସମ୍ପତ୍ତି ମାଡ଼ିଯିବ । ମୁଁ ମଲାବେଳକୁ ଏ ମୁଦିଟି କାହାକୁ ଦେଇଯିବି, ଠିକ୍ କରିପାରୁ ନାହିଁ । ଯାହାକୁ ମୁଦିଟି ନ ଦେବି ତା ମନ କଷ୍ଟ ହେବ । ସେଥିପାଇଁ ମୁଁ ଗୋଟିଏ କଥା ମନେ ମନେ ଭାବୁଛି । ଏ ମୁଦିକୁ ଭାଙ୍ଗି ସମାନ ଚାରିଭାଗ କରି ପ୍ରତିଭାଗ ସହିତ ଆଉ ହୀରା ମିଶାଇ ଏହିଭଳି ଠିକ୍ ଚାରୋଟି ମୁଦି ତିଆରି କରିଦିଅ । ଗୋଟିଏ ଲେଖାଏଁ ପ୍ରତି ପୁଅଙ୍କୁ ମୋ ମୃତ୍ୟୁ ପୂର୍ବରୁ ଦେଇଯିବି ।

ବଣିଆ ଧନପତିର କଥାରେ ହଁ ଭରିଲା । ଅସଲ ହୀରା ମୁଦିକୁ ଭାଙ୍ଗି ଆଉ ହୀରା ସହିତ ମିଶାଇ ଚାରୋଟି ମୁଦି ତିଆରି କରି ଆଣିବ ବୋଲି ଅସଲ ହୀରା ମୁଦିକୁ ସାଙ୍ଗରେ ନେଇଗଲା । ହୀରା ମୁଦିର ଗୁଣ ସେ ଧନପତିଙ୍କଠାରୁ ଶୁଣିଥିଲା । ଅସଲ ହୀରା ମୁଦିଟି ଉପରେ ତାର ଲୋଭ ହେଲା । ସେ ମୁଦିଟିକୁ ଆଣି ନିଜ ପାଖରେ ରଖିଦେଲା । ତା'ପରେ କେବଳ ହୀରାରେ ଚାରୋଟି ମୁଦି ତିଆରି କରି ଧନପତିଙ୍କୁ ଦେଇଦେଲା ।

କିଛି ଦିନ ପରେ ଧନପତିଙ୍କ ମୃତ୍ୟୁସମୟ ନିକଟ ହୋଇଆସିଲା । ସେ ନିଜ ଚାରି ପୁଅଙ୍କୁ ପାଖକୁ ଡାକିଲେ । ହୀରା ମୁଦିରୁ ଗୋଟିଏ ଲେଖାଏଁ ପ୍ରତ୍ୟେକ ପୁଅଙ୍କୁ ଦେଲେ । କହିଲେ, "ଏ ମୁଦିକୁ ତୁମେମାନେ ପାଖରେ ରଖିଥିବ । ଏ ମୁଦି ପାଖରେ ଥିଲେ ତୁମ ଉପରେ କୌଣସି ବିପଦ ପଡ଼ିବ ନାହିଁ । ତୁମେ ସମସ୍ତେ ସୁଖରେ ରହିବ ।"

ତାର କିଛି ଦିନ ପରେ ଧନପତିଙ୍କ ମୃତ୍ୟୁ ହୋଇଗଲା । ବାପା ମରିଯିବା ପରେ ପୁଅମାନେ ସମସ୍ତେ ଭିନେ ହୋଇଗଲେ । ହୀରାମୁଦି ଆଉ କିଛି କାମ ଦେଖାଇଲା ନାହିଁ । ସେମାନଙ୍କର ଧନ ସମ୍ପତ୍ତି ସବୁ ଶେଷ ହୋଇ ଆସିଲା । ସେମାନେ ଗରିବ ହୋଇଗଲେ । ଦୁଇଓଳି ପେଟ ପୂରାଇ ଖାଇବାକୁ ମଧ୍ୟ ସେମାନଙ୍କୁ ମିଳିଲା ନାହିଁ ।

ଧନପତିଙ୍କ ବିଧବା ସ୍ତ୍ରୀଙ୍କ ମନରେ ସନ୍ଦେହ ହେଲା । ସେ ବଣିଆକୁ ଅସଲ ହୀରା ଭାଙ୍ଗି ନୂଆ ମୁଦି ଗଢ଼ିବା ବାଣ୍ଟିବା କଥା ଜାଣିଥିଲେ । ତାଙ୍କର ଧାରଣା ହେଲା, ବୋଧହୁଏ ବଣିଆ ସେ ଅସଲ ହୀରାମୁଦିକୁ ନ ଦେଇ ଠକି ଦେଇଛି । ସେ ସେଥିପାଇଁ ଭିନ୍ ଦେଶର ରାଜାଙ୍କ ପାଖରେ ଯାଇ ଗୁହାରି କଲେ । ରାଜାଙ୍କୁ ସବୁ କଥା ଖୋଲି କହିଲେ ।

ଧନପତିଙ୍କ ବିଧବା ସ୍ତ୍ରୀଠାରୁ ସବୁକଥା ଶୁଣିସାରି ରାଜାଙ୍କ ମନରେ ମଧ୍ୟ ସେ ବଣିଆ ପ୍ରତି ସନ୍ଦେହ ହେଲା । କାରଣ ଦିନ କେତେଟାରେ ସେ ବଣିଆର ଧନ ସମ୍ପତ୍ତି ଖୁବ୍ ବଢ଼ିଯାଇଥିଲା । ରାଜାଙ୍କୁ ସେ ଖାତିର କରୁ ନ ଥିଲା । ବଣିଆ ଏତେ ଧନ କେଉଁଠୁ ଆଣୁଛି ବୋଲି ରାଜା ମଧ୍ୟ

ସନ୍ଦେହ କରୁଥିଲେ । ଧନପତିଙ୍କ ବିଧବା ସ୍ତ୍ରୀଙ୍କଠାରୁ ହୀରାମୁଦି କଥା ଶୁଣିଲା ପରେ ସେ ସବୁ ବୁଝିପାରିଲେ । ସେ ଜାଣିପାରିଲେ ଯେ ହୀରାମୁଦିର କରାମତି ଯୋଗୁଁ ବଣିଆର ଧନସମ୍ପତ୍ତି ହୁ' ହୁ' ହୋଇ ବଢ଼ିଚାଲିଛି ।



[ ରାଜା ବଣିଆକୁ ହୀରାମୁଦି ସମ୍ବନ୍ଧରେ ପଚାରୁଛନ୍ତି ]

ରାଜା ବଣିଆକୁ ଡକାଇ ପଠାଇଲେ । ସିପାହୀ ପଠାଇ ବଣିଆର ଘରଦ୍ୱାର ସବୁ ଖୋଜାଇଲେ । ଶେଷକୁ ବଣିଆର ସିନ୍ଦୁକ ଦେହରୁ ଗୋଟିଏ ହୀରାମୁଦି ବାହାରିଲା । ଧନପତି ପୁଅମାନଙ୍କ ମୁଦି ଭଳି ସେ ମୁଦିଟି ଠିକ୍ ଦିଶୁଥିଲା । ରାଜା ପଚାରିଲେ, "ତୁ ଏହି ମୁଦି କେଉଁଠୁ ପାଇଲୁ ?

ବଣିଆ କହିଲା, "ଧନପତି ତାଙ୍କର ପୁଅ ଲାଗି ଯୋଉଟି ମୁଦି ଗଢ଼ାଇବାକୁ ଦେଇଥିଲେ । ସେ ମୁଦି ତାଙ୍କ ପାଇଁ ତିଆରି କଲାବେଳେ ମୋ ପାଇଁ ମଧ୍ୟ ଯେମିତିକା ଗୋଟିଏ ତିଆରି କରିଥିଲି । ଏହା ହେଉଛି ସେହି ମୁଦି ।"

ରାଜା ଧନପତିଙ୍କ ପୁଅ ମୁଦିରୁ ଗୋଟିଏ କାଢ଼ି ବଣିଆକୁ ଦେଲେ । କହିଲେ, "ଯଦି ଠିକ୍ ଏହି ମୁଦି ଭଳି ତୁ ତୋ ମୁଦିଟିକୁ ଗଢ଼ିଥିଲୁ ତେବେ ତୁ ଏହି ମୁଦିଟିକୁ ନେଇଯା ।"

ବଣିଆ ଝଟପଟ କାନମୁଣ୍ଡା ଆଉଁସି ଅସଲ ହୀରାମୁଦିଟି ରାଜାଙ୍କୁ ଦେଇ ନକଲି ମୁଦିଟି ନେଇ ଘରକୁ ଫେରିଲା । କିଛି ଦିନ ପରେ ଦେଖାଗଲା ଯେ ବଣିଆ ଘରୁ ସମ୍ପତ୍ତି ସବୁ ଉଭେଇ ଯାଇଛି । ସେ ଅଭାବରେ ପଡ଼ି ଦୁଃଖ କଷ୍ଟରେ ଚଳୁଛି ।

ରାଜା ବୁଝିପାରିଲେ ଯେ ଅସଲ ହୀରାମୁଦିଟି ବଣିଆଠାରୁ କାଢ଼ି ଆଣିଲା ପରେ ତା'ର ଧନ-ସମ୍ପତ୍ତି କମି ଯାଇଛି । ସେ ଗରିବ ହୋଇଯାଇଛି । ପ୍ରକୃତରେ ସେ ଧନପତିଙ୍କ ଅସଲ ହୀରାମୁଦିକୁ ଲୁଚେଇକରି ରଖିଥିଲା ।

ସେ ଧନପତିଙ୍କ ଚାରି ପୁଅ ଓ ବିଧବା ସ୍ତ୍ରୀଙ୍କୁ ଡକାଇ କହିଲେ, "ତୁମେ ନିଜ ନିଜ ଭିତରେ କଳିକଜିଆ କରି ଅଲଗା ଅଲଗା ହୁଅ ନାହିଁ । ସମସ୍ତେ ଏକାଠି ମିଳିମିଶି ଚଳ । ଏ ଅସଲ ହୀରାମୁଦି ତୁମ ମାଆଙ୍କ ପାଖରେ ରହୁ । ପୁଣି ଏହି ମୁଦି ଯୋଗୁ ତୁମର ଧନ ସମ୍ପତ୍ତି ବଢ଼ିବ । ତୁମ୍ଭେମାନେ ସୁଖରେ ରହିବ ।"

ଧନପତିଙ୍କ ପୁଅ ଚାରିହେଁ ରାଜାଙ୍କ କଥା ମାନି ଏକାଠି ଚଳିଲେ । ହୀରାମୁଦିକୁ ମାଆଙ୍କ ପାଖରେ ରଖିଲେ । ସେହି ଅସଲ ହୀରାମୁଦିର ଗୁଣ ଯୋଗୁ ତାଙ୍କ ସମ୍ପତ୍ତି କ୍ରମେ କ୍ରମେ ବଢ଼ିବାକୁ ଲାଗିଲା । ସେମାନେ ସୁଖରେ ରହିଲେ ।





# ଗଳ୍ପମାଳା

ଅନେକ ଦିନ ତଳର କଥା ।

ସୁବର୍ଣ୍ଣପୁର ବୋଲି ଗୋଟିଏ ଦେଶ । ସେହି ଦେଶରେ ଜଣେ ଧାର୍ମିକ ରାଜା ରାଜତ୍ୱ କରୁଥିଲେ । ତାଙ୍କର ରାଜ୍ୟରେ ପ୍ରଜାମାନେ ସୁଖ ଶାନ୍ତିରେ ଥିଲେ । ଦେଶ ପ୍ରତି ଶତ୍ରୁ ଭୟ ନ ନଥିଲା । ଧନ ଦଉଲତରେ ଦେଶ ପୂରି ରହିଥିଲା; କିନ୍ତୁ ଗୋଟିଏ କଥା ଯୋଗୁଁ ରାଜାଙ୍କ ମନ ସବୁବେଳେ ଦୁଃଖରେ ପୂରି ରହିଥିଲା । ଥରେ ରାଜାଙ୍କର ସାତ ପୁଅଯାକ ବୋଇତରେ ସମୁଦ୍ର ବାଟରେ ଲଢ଼େଇ କରି ଯାଉଥିଲେ । ବାଟରେ ଘୋର ଝଡ଼ ତୋଫାନ ହେଲା । ବୋଇତ ଓଲଟି ପଡ଼ିଲା । ରାଜାଙ୍କ ସାତପୁଅଯାକ ସମୁଦ୍ରରେ ବୁଡ଼ିମଲେ । ରାଜାଙ୍କର ଆଉ ପୁଅ ନ ଥିଲେ । ସେହିଦିନୁ ସେ ମନ ଦୁଃଖରେ କାଳ କାଟୁଥିଲେ ।

ରାଜ୍ୟ ଶାସନ କଥା ମନେପକାଇଲେ ରାଜାଙ୍କ ମନରେ ଦୁଃଖ ହୁଏ । ସେ ଭାବନ୍ତି, ତାଙ୍କର ତ ଆଉ ପୁଅ ନାହାନ୍ତି । ତାଙ୍କ ପରେ ଏ ରାଜ୍ୟ ଶାସନ ଚଳାଇବ କିଏ ?

ରାଜାଙ୍କ ମନ କଥା ବୁଝିପାରି କେତେକ ବ୍ୟକ୍ତି କହିଲେ, "ଆପଣ ଆଉ ଗୋଟିଏ କେଉଁ ଦେଶର ରାଜକୁମାରଙ୍କୁ ନିଜର ପୋଷ୍ୟପୁତ୍ର କରି ଆଣନ୍ତୁ । ସେହି ପୁତ୍ର ଆପଣଙ୍କ ଅନ୍ତେ ଦେଶ ଶାସନ କରିବ ।"

ରାଜା ମଧ୍ୟ ମନେ ମନେ ଏହିଭଳି ଭାବୁଥିଲେ; କିନ୍ତୁ ରାଣୀ ଏଥିରେ ମୋଟେ ରାଜି ହେଲେ ନାହିଁ । ସେ ଭାବିଲେ ମାଗିଆଣିବା ଚିଜକାରିରେ ମନବୋଧ ହୁଏ ନାହିଁ । ସେହିପରି ପୋଷ୍ୟପୁତ୍ର କରି ଆଣିଥିବା ପୁଅ କେବେ ବାପା ମାଆଙ୍କ ମନଲାଖି ହୋଇ ପାରିବ ନାହିଁ । ତେଣୁ ପୋଷ୍ୟପୁତ୍ର କରି ଆଣିଲେ ତାଙ୍କର ଦୁଃଖ ଦୂର ହେବନାହିଁ ।

କିଛି ଦିନ ପରେ ରାଜାଙ୍କ ଭାଗ୍ୟ ଉଦୟ ହେଲା । ଭଗବାନଙ୍କ ଦୟାରୁ ତାଙ୍କର ଗୋଟିଏ ପୁତ୍ର ସନ୍ତାନ ଜନ୍ମ ହେଲା । ଦେଶର ସବୁ ଲୋକେ ଏ ସମ୍ବାଦ ପାଇ ଖୁସି ହେଲେ ।

ପୁଅଟି ଦିନକୁ ଦିନ ବଢ଼ିବାକୁ ଲାଗିଲା । ରାଜା ସେତେବେଳକୁ ବୁଢ଼ା ହେବାକୁ ବସିଲେଣି । ସେ ଭାବିଲେ, ପୁଅକୁ ଜଣେ ଉପଯୁକ୍ତ ଗୁରୁ ପାଖରେ ଶିକ୍ଷା ଦେବାକୁ ହେବ ।

ପୁଅର ଶିକ୍ଷାଗ୍ରହଣ ଶେଷ ହୋଇଗଲେ ତା' ହାତରେ ରାଜ୍ୟଭାର ଅର୍ପଣ କରି ବଣକୁ ତପସ୍ୟା କରିବାକୁ ଚାଲିଯିବେ; କିନ୍ତୁ ଉପଯୁକ୍ତ ଗୁରୁ ଜଣେ କେଉଁଠୁ ମିଳିବେ ।

ରାଜା ଏଥିପାଇଁ ଥରେ ରାଜସଭା ଡକାଇଲେ । ରାଜସଭାରେ ପାତ୍ରମନ୍ତ୍ରୀମାନେ ସମସ୍ତେ ବସିଥାନ୍ତି । ରାଜା ପଚାରିଲେ, "ଆଚ୍ଛା କହିଲ ପୃଥିବୀରେ ମୋଠାରୁ ବଳି ପଣ୍ଡିତ, ଦାନୀ, ଗୁଣୀ ଲୋକ ଆଉ କିଏ ଅଛି ?"

ରାଜାଙ୍କ କଥା ଶୁଣି ସଭାରେ ବସିଥିବା ପାତ୍ରମନ୍ତ୍ରୀମାନେ ନିଜ ନିଜ ମୁହଁକୁ ଚାହାଁଚାହିଁ ହେଲେ । ସମସ୍ତେ ଏକ ସ୍ୱରରେ କହିଲେ, "ମହାରାଜ ! ଆପଣଙ୍କଠାରୁ ବଳି ପଣ୍ଡିତ, ଦାନୀ, ଗୁଣୀ ଲୋକ ଏ ପୃଥିବୀରେ ଆଉ ନାହାନ୍ତି । ଆପଣ ହେଉଛନ୍ତି ଏ ପୃଥିବୀରେ ଶ୍ରେଷ୍ଠ ପଣ୍ଡିତ, ଦାନୀ ଏବଂ ଗୁଣୀ ଲୋକ ।"

ରାଜା ଦେଖିଲେ ରାଜସଭାରେ ଗୋଟିଏ କୋଣରେ ଜଣେ ବୁଢ଼ା ବସିଛନ୍ତି, କାହାରିକୁ କିଛି କହୁନାହାନ୍ତି । କେବଳ ତାଙ୍କୁ ଛାଡ଼ିଦେଲେ ଆଉ ସମସ୍ତେ ତାଙ୍କୁ ପୃଥିବୀର ଶ୍ରେଷ୍ଠ ପଣ୍ଡିତ, ଦାନୀ ଓ ଗୁଣୀ ଲୋକ ବୋଲି କହୁଛନ୍ତି । ସେ ଖୁସି ହୋଇ ଯେଉଁମାନେ ତାଙ୍କୁ ପୃଥିବୀର ଶ୍ରେଷ୍ଠ ଗୁଣୀ ପୁରୁଷ ବୋଲି କହିଥିଲେ, ତାଙ୍କୁ ଗୋଟିଏ ଗୋଟିଏ ମୁକ୍ତାହାର ପୁରସ୍କାର ଦେଇ ବିଦା କରିଦେଲେ ।

ଶେଷକୁ ସେ ସଭାରେ ବସିଥିବା ବୃଦ୍ଧଙ୍କ ପାଖକୁ ଆସିଲେ । ତାଙ୍କୁ ପଚାରିଲେ, "ଆପଣ ଏଠାରେ ମୁହଁ ଶୁଖାଇ ବସିଛନ୍ତି କାହିଁକି ? ମୁଁ ଯେଉଁ ପ୍ରଶ୍ନ କଲି, ସେଥିରେ ଆପଣଙ୍କର ମତ କ'ଣ ?"

ବୃଦ୍ଧ କହିଲେ, "ମୋ ମତ ଜଣାଇବାକୁ ମତେ ଡର ମାଡ଼ୁଛି ।"

ରାଜା କହିଲେ, "ଆପଣ ଭୟ କରିବାର କିଛି କାରଣ ନାହିଁ, ନିର୍ଭୟରେ ଆପଣ ଆପଣଙ୍କ ମତ ଜଣାନ୍ତୁ ।"

ବୃଦ୍ଧ କହିଲେ, "ଯେଉଁମାନେ ଆପଣଙ୍କୁ ପୃଥିବୀର ଶ୍ରେଷ୍ଠ ପଣ୍ଡିତ, ଗୁଣୀ ଓ ଦାନୀ ବୋଲି କହିଲେ, ସେମାନେ ଆପଣଙ୍କୁ ଖୁସାମତ କରି ମିଛ କହିଗଲେ । ଆପଣ ପଣ୍ଡିତ, ଗୁଣୀ କିମ୍ବା ଦାନୀ ପୁରୁଷ ହୋଇପାରିଥାନ୍ତି; କିନ୍ତୁ ପୃଥିବୀରେ ଆପଣଙ୍କଠାରୁ ବଳି ଆହୁରି ବଡ଼ ଦାନୀ, ପଣ୍ଡିତ ଲୋକ ନାହାନ୍ତି ବୋଲି କିପରି ଜାଣିଲେ ?"

ଯଦି ଆପଣ ନିଜକୁ ଶ୍ରେଷ୍ଠ ପଣ୍ଡିତ ଓ ଗୁଣୀଲୋକ ବୋଲି ଭାବୁଥାନ୍ତି, ତେବେ ନିଶ୍ଚୟ ଦେଖିବେ ଆପଣଙ୍କଠାରୁ ବଳି ପଣ୍ଡିତ ଓ ଗୁଣୀଲୋକ ନିଶ୍ଚୟ ଅଛନ୍ତି; କାରଣ ଯଦି ଆପଣ ଏହି ରାଜ୍ୟର ରାଜା ହୋଇ

ଶ୍ରେଷ୍ଠ ପଣ୍ଡିତ ଓ ଗୁଣୀଲୋକ ହୋଇ ପାରିଲେ ତେବେ ଆପଣଙ୍କ ରାଜ୍ୟଠାରୁ ଯେଉଁ ରାଜ୍ୟ ବଡ଼ ଏବଂ ଯେଉଁଠାରେ ଉତ୍ତମ ନାଗରିକ ବାସ କରନ୍ତି ସେହି ଦେଶର ରାଜା ଆପଣଙ୍କଠାରୁ ନିଶ୍ଚୟ ବଡ଼ ନୁହଁନ୍ତି କି ?"



[ ବୁଢ଼ାଲୋକଟିକୁ ରାଜା ମୁକ୍ତାହାର ପିନ୍ଧାଇ ଦେଉଛନ୍ତି ]

ବୃଦ୍ଧଙ୍କ କଥା ଶୁଣି ରାଜା କହିଲେ, "ଆପଣ ଠିକ୍ କହୁଛନ୍ତି । ଆପଣଙ୍କୁ ମୁଁ ଅସଲ ମୁକ୍ତାହାର ପିନ୍ଧାଇ ଦେଉଛି । ଆପଣ ପ୍ରକୃତ ଜ୍ଞାନୀ ଲୋକ । ଆପଣ ମୋ ପୁଅକୁ ଶିକ୍ଷା ଦେବା ଦାୟିତ୍ୱ ଗ୍ରହଣ କରନ୍ତୁ ।"

ଏହି ସମୟରେ ରାଜସଭାକୁ ପୁଣି ପାଞ୍ଚମନ୍ତ୍ରୀମାନେ ଫେରି ଆସିଲେ । ସେମାନେ କହିଲେ, "ଆପଣ ଆମମାନଙ୍କୁ ନକଲି ମୁକ୍ତାହାର ଦେଇଛନ୍ତି । ଏହା ଅସଲି ମୁକ୍ତାହାର ନୁହେଁ ।"

ରାଜା କହିଲେ, "ଯେପରି ଲୋକକୁ ସେପରି ପୁରସ୍କାର ।" ଏହା ଶୁଣି ସେମାନେ ଲଜ୍ଜିତ ହେଲେ ଏବଂ ଖୋସାମତ ଓ ମିଛ ନ କହିବା ପାଇଁ ସେହିଦିନଠୁ ପ୍ରତିଜ୍ଞା କଲେ ।





# ଭଗବାନ ଯାହାଙ୍କୁ ଦିଅନ୍ତି

ଅନେକ ଦିନ ତଳର ଘଟଣା ।

ଏ ଘଟଣାଟି ଇଟାଲି ଦେଶରେ ଘଟିଥିଲା । ଇଟାଲି ଦେଶରେ ସେତେବେଳେ ଜଣେ ନ୍ୟାୟବନ୍ତ ରାଜା ରାଜତ୍ୱ କରୁଥିଲେ । ରାଜା ପ୍ରଜାମାନଙ୍କ ଗୁହାରି ସଞ୍ଜ ସକାଳ ସବୁବେଳେ ବସି ଶୁଣୁଥିଲେ, ସେମାନଙ୍କୁ ନ୍ୟାୟ ବିଚାର ଦେଉଥିଲେ । କାହାରି ଦୁଃଖ ସେ ସହି ପାରୁ ନ ଥିଲେ ।

ରାଜା ପ୍ରଜାଙ୍କ ଗୁହାରି ଶୁଣିବା ପାଇଁ ଏତେ ଆଗ୍ରହ ଦେଖାଇଲେ ବି ଗରିବଲୋକ ରାଜାଙ୍କ ପାଖକୁ ସାହସ କରି ଆସି ପାରୁ ନଥିଲେ । ସେମାନଙ୍କୁ ରାଜାଙ୍କ ଜଗୁଆଳି ଅଧବାଟରୁ ଫେରାଇ ଦେଉଥିଲେ । ସେମାନଙ୍କର ଦୁଃଖ କଥା ରାଜାଙ୍କୁ ଜଣାଇ ପାରୁ ନ ଥିଲେ ।

ଏ କଥା ରାଜାଙ୍କ କାନକୁ ଗଲା ।

ଏହା ଶୁଣିବାରୁ ରାଜା ଆଦେଶ ଦେଲେ ଯେ ତାଙ୍କର ରାଜସଭାକୁ ଆସିବା ଲାଗି ଯେଉଁ ଫାଟକ ଅଛି, ସେ ଫାଟକ ପାଖରେ ଆଉ କେହି ଜଗୁଆଳି ରହିବେ ନାହିଁ । ଯିଏ ଯେତେବେଳେ ଆସିବେ, ସେ ତା'ର ଦୁଃଖ ରାଜାଙ୍କ ପାଖରେ ଜଣାଇ ପାରିବ ।

ରାଜାଙ୍କର ଏଭଳି ଆଦେଶକୁ ମନ୍ତ୍ରୀମାନେ ପସନ୍ଦ କଲେ ନାହିଁ । ସେମାନେ କହିଲେ, "ଫାଟକ ପାଖରେ ଜଣେ ଜଗୁଆଳି ନ ରହିଲେ, ଚୋର ଡକାୟତମାନେ ମଧ୍ୟ ରାଜସଭା ଭିତରକୁ ଆସି-ପାରନ୍ତି । ତା'ହେଲେ ରାଜସଭାରେ ଗଣ୍ଡଗୋଳ ହେବ । ରାଜକାର୍ଯ୍ୟ ଠିକ୍ ଭାବରେ ଚାଲିପାରିବ ନାହିଁ ।"

ପ୍ରଧାନ ମନ୍ତ୍ରୀ ରାମଚନ୍ଦ୍ର ଶେଷକୁ ଗୋଟିଏ ଉପାୟ ବାହାର କଲେ । ସେ କହିଲେ, "ରାଜସଭା ଫାଟକ ପାଖରେ ଗୋଟିଏ ଘଣ୍ଟା ଟାଙ୍ଗି ଦିଆଯାଉ । ସେ ଘଣ୍ଟା ଦେହରେ ଗୋଟିଏ ଦଉଡ଼ି ଲଗାଇ ଫାଟକ ପାଖରେ ରଖାଯାଉ । ଯେଉଁ ଗରିବ ପ୍ରଜା ସେମାନଙ୍କର ଦୁଃଖ ଜଣାଇବାକୁ ଆସିବେ, ସେ ସେହି ଦଉଡ଼ିକୁ ଟାଣିଦେଲେ ରାଜସଭାରେ ଘଣ୍ଟାର ଶବ୍ଦ ଶୁଭିବ । ତାହା ହେଲେ ରାଜା ଯାଇ ସେ ଲୋକର ଗୁହାରି ଶୁଣି ଆସିବେ ।"

ପ୍ରଧାନ ମନ୍ତ୍ରୀଙ୍କ କଥାରେ ସମସ୍ତେ ରାଜି ହେଲେ । ରାଜସଭା ଫାଟକ ପାଖରେ ଗୋଟିଏ ଘଣ୍ଟା ଟଙ୍ଗାଯାଇ ତା ଦେହରେ ଗୋଟିଏ ଦଉଡ଼ି ଲଗାଗଲା ଏବଂ ସେ ଦଉଡ଼ିକୁ ନେଇ ଫାଟକ ଦେହରେ ବାନ୍ଧି ଦିଆଗଲା ।

ସେ ଘଣ୍ଟା ଟଙ୍ଗା ହେବାର ଅନେକ ଦିନ ବିତିଗଲା; କିନ୍ତୁ କୌଣସି ଲୋକ ଆସି ସେ ଦଉଡ଼ିକୁ ଟାଣିଲେ ନାହିଁ କି ରାଜସଭାର ଘଣ୍ଟା ବାଜିଲା ନାହିଁ । ସେ ପୁରୁଣା ଦଉଡ଼ି ଦେହରୁ ଠାଏ ଠାଏ ଛିଡ଼ିଯିବାକୁ ଲାଗିଲା; ତେଣୁ ଜଗୁଆଳ ପାଖରେ ଥିବା ଘାସକୁ ବଳିଦେଇ ଦଉଡ଼ିଟିଏ ତିଆରି କରିଦେଲା । ସେହି ଘାସ ଦଉଡ଼ିକୁ ସେ ଛିଣ୍ଡା ଦଉଡ଼ି ସାଥିରେ ଗଇଣ୍ଠେଇ ଦେଲା ।



[ ଗୁହାରି ଜଣାଇବା ପାଇଁ ଘଣ୍ଟାର ଦଉଡ଼ିକୁ ଘୋଡ଼ା ଟାଣୁଛି ]

ଦିନେ ଗୋଟିଏ ଘୋଡ଼ା ଫାଟକ ପାଖକୁ ଘାସ ଚରିବାକୁ ଆସିଥିଲା । ସେ ଘାସ ଖାଇ ଖାଇ ସେହି ଘାସବଳା ଦଉଡ଼ିଟିକୁ ମଧ୍ୟ ଖାଇବା ପାଇଁ ଟାଣିଦେଲା । ଘାସ ଦଉଡ଼ିଟିକୁ ଟାଣିଦେବା ଫଳରେ ହଠାତ୍ ଘଣ୍ଟା ବାଜି ଉଠିଲା । ଏତେ ଦିନେକେ ଘଣ୍ଟା ଶବ୍ଦ ଶୁଣି, ରାଜା ଭାବିଲେ କେଉଁ ଗରିବ ପ୍ରଜା

କଷ୍ଟର କଥା ରାଜାଙ୍କୁ ଜଣାଇବାକୁ ଆସିଛି । ସେ ସାଙ୍ଗେ ସାଙ୍ଗେ ଫାଟକ ପାଖକୁ ଚାଲିଗଲେ । ଫାଟକ ପାଖକୁ ଯାଇ ଦେଖିଲେ ଘୋଡାଟିଏ ଦଉଡ଼କୁ ଧରିଛି ।

ମଣିଷ ବଦଳରେ ଘୋଡାଟିଏ ଦେଖି ପାତ୍ରମନ୍ତ୍ରୀଙ୍କ ମୁହଁ ଶୁଖିଗଲା; କିନ୍ତୁ ରାଜା କହିଲେ, "ହଁ, ଏ ଘୋଡ଼ାର ବୋଧହୁଏ କିଛି ଦୁଃଖ ହୋଇଛି । ସେଥିପାଇଁ ସେ ତାର ଦୁଃଖ ଜଣାଇବାକୁ ଏଠାକୁ ଆସିଛି ।"

ତା'ପରେ ରାଜା ଘୋଡ଼ା ମାଲିକକୁ ରାଜସଭାକୁ ଆସିବାକୁ ହୁକୁମ ଦେଲେ ।

ଘୋଡ଼ାର ମାଲିକ ରାଜସଭାକୁ ଆସିଲା ।

ରାଜା ପଚାରିଲେ, "ତୁମେ ଏ ଘୋଡ଼ାକୁ ଖାଇବାକୁ ଦେଉଛ ?"

ଡର ଡର ଘୋଡ଼ାର ମାଲିକ କହିଲା, "ନାଇଁ ଆଜ୍ଞା !"

ରାଜା ରାଗିଯାଇ ପଚାରିଲେ, "ଖାଇବାକୁ ଦେଉନାହିଁ କାହିଁକି ?"

ଘୋଡ଼ା ମାଲିକ କହିଲା, "ଘୋଡ଼ାଟା ବୁଢ଼ା ହୋଇଗଲାଣି । ଆଉ କାମଧନ୍ଦା କରିପାରୁନାହିଁ । ତାକୁ ମିଛରେ ଖାଇବାକୁ ଦେଇ ଲାଭ କଣ ?"

ଘୋଡ଼ା ମାଲିକର କଥା ଶୁଣି ରାଜା ଆହୁରି ରାଗିଗଲେ । ସେ କହିଲେ, "ଘୋଡ଼ା ଏତେଦିନ ହେଲା ତୁମର ସେବା କରିଆସିଥିଲା । ବୁଢ଼ାଦିନେ ତୁମେ ତାକୁ ଖାଇବାକୁ ନ ଦେବା ଅନ୍ୟାୟ । ଆଜିଠାରୁ ତୁମେ ତାକୁ ଠିକ୍ ନିୟମିତ ଭାବରେ ଖାଇବାକୁ ଦିଅ । ନଚେତ୍ ତୁମକୁ କଠିନ ଶାସ୍ତି ଦିଆଯିବ ।"

ରାଜାଙ୍କ ଆଦେଶ ପାଳନ କରିବ ବୋଲି ରାଜି ହୋଇ ଘୋଡ଼ାର ମାଲିକ ଚାଲିଗଲା ।

ତା ଆରଦିନ ରାଜା ରାଜ୍ୟର ଚାରିଆଡ଼େ ଢେଙ୍କ ରା ଦେଇଦେଲେ ଯେ, ଯେଉଁମାନେ କୌଣସି ଜୀବଜନ୍ତୁ ପାଳନ କରୁଛନ୍ତି, ସେ ଜୀବଜନ୍ତୁ ବୁଢ଼ା ହୋଇଗଲେ ସେମାନେ ତାଙ୍କୁ ଘରୁ ତଡ଼ିଦେଇ ପାରିବେ ନାହିଁ । ସେ ମରିବାଯାଏ ନିୟମିତ ଭାବରେ ତାକୁ ଖାଇବା ପିଇବାକୁ ଦେବାକୁ ହେବ ।

ସେହି ଦିନଠାରୁ ଘୋଡ଼ା ବାହାରେ ନ ଚରି ମାଲିକ ଘରେ ଖାଇପିଇ ଖୁସିରେ ରହିଲା । ସେ ଭାବିଲା, ମୁଁ ଯାହା ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି ତାହା ହେଲା, ଏହା ଭଗବାନଙ୍କ ଦୟା ନୁହେଁ ତ ଆଉ କଣ ?






ରାମହରି ବୋଲି ଗୋଟିଏ ଗରିବ ଲୋକ ଥିଲା । ସେ ଗୋଟିଏ ଛପର ଚାଳଘରେ ରହୁଥାଏ । ପଇସା ଅଭାବରୁ ତା' ଘର ପ୍ରତି ବରଷ ଛାଆଣି ହୋଇପାରେ ନାହିଁ । ବର୍ଷାଦିନେ ସେଇ କଣାବାଟେ ଘରେ ପାଣି ପଡ଼େ । ବିଚରା କ'ଣ କରିବ ? କରମକୁ ଆଦରି ରହିଥାଏ ।

ରାମହରି ଗରିବ ସତ; କିନ୍ତୁ ଭାରି ଧାର୍ମିକ । ସେ ନିତି ସକାଳୁ ଉଠି ଶିବ ପୂଜା କରେ । ପବିତ୍ର ଭାବରେ ଚଳେ । କାହାରିକୁ କିଛି କହେ ନାହିଁ । ଶିବଙ୍କ ପାଦରେ ସବୁବେଳେ ଧ୍ୟାନ ଲଗାଇଥାଏ ।

ଦିନେ ଆକାଶରେ ଖୁବ୍ ବର୍ଷା ହୋଉଥାଏ । ବର୍ଷା ହେଲେ ଘରେ ପାଣି ପଶିଯିବ ଭାବି ରାମହରି ଦାଣ୍ଡ ପିଣ୍ଡାରେ ମୁହଁ ଶୁଖାଇ ବସିଥାଏ । ସେହି ସମୟରେ ଶିବ ପାର୍ବତୀ ସେହି ରାସ୍ତାରେ ଯାଉଥିଲେ ।

ପାର୍ବତୀ ଶିବଙ୍କୁ କହିଲେ, "ରାମହରି ଆପଣଙ୍କର ଜଣେ ବଡ଼ ଭକ୍ତ । ସେ ଦୁଃଖରେ କାଳ କାଟୁଛି, ଅର୍ଥ ଅଭାବରୁ ଭଲକରି ଖଣ୍ଡେ ଘର କରିପାରୁ ନାହିଁ । ବର୍ଷା ହେଲେ ତା ଘରେ ପାଣି ପଶିଯିବ ବୋଲି ସେ ବସି କାନ୍ଦୁଛି । ତୁମେ ତାକୁ କିଛି ଧନ ଦେଉନାହଁ ?"

ପାର୍ବତୀଙ୍କ କଥା ଶୁଣି ଶିବ କହିଲେ, 'ଅଚ୍ଛା ! କାଲି ମୁଁ ତା ଛପରଘର କଣା ବାଟେ ସୁନାମୁଣ୍ଡା ବରଷା କରିବି । ସେଇ ସୁନା ମୁଣ୍ଡା ବିକି ସେ ସୁଖରେ ଚଳିଯିବ ।"

ଶିବ ପାର୍ବତୀ ଏଇଭଳି କଥାବାର୍ତ୍ତା ହୋଇ ଚାଲିଗଲେ । ଯଦୁନାଥ ବୋଲି ଜଣେ ଲୋକ, ଶିବ ପାର୍ବତୀଙ୍କର ଏହି କଥାକୁ ଶୁଣୁଥିଲା । ସେ ଭାବିଲା, ମୁଁ ଯଦି ରାମହରିକୁ ମୋ ଘରକୁ ପଠାଇ ଦେଇ ରାମହରି ଘରେ ରହିଯିବି, ତାହେଲେ ମୁଁ ଗୁଡ଼ାଏ ସୁନାମୁଣ୍ଡା ପାଇଯିବି ।

ରାମହରି ତ ତା ଘରେ ସୁନା ବରଷା ହେବ ବୋଲି ଜାଣି ନଥାଏ । ଯଦୁନାଥ ଯାଇ ରାମହରି ପାଖରେ ପହଞ୍ଚିଲା । ରାମହରିକୁ ଡାକି ସେ କହିଲା, "ଭାଇ ! ତୁମେ ଏ ଛପର ଚାଳଘରେ ଆଉ ରହନାହିଁ । ତୁମେ ମୋ ଘରକୁ ଚାଲିଯାଅ । ମୁଁ ତୁମ ଘରେ ରହିବି ।"

ଯଦୁନାଥର କଥା ଶୁଣି ରାମହରି ପ୍ରଥମେ ତା କଥାକୁ ବିଶ୍ୱାସ କଲା ନାହିଁ । ଯଦୁନାଥକୁ ସେ କହିଲା, "ତୁମେ ବଡ଼ଲୋକ, ସୁନା ଜିନିଷ କାରବାର କରୁଛ । ତୁମ ଘରେ ଅନେକ ସୁନା ଜିନିଷ ଅଛି, ଟଙ୍କା ପଇସା ରହିଛି । ତୁମେ ସେ ଘର ଛାଡ଼ିଦେଇ ମୋ ଭଙ୍ଗା କୁଡ଼ିଆରେ କାହିଁକି ରହିବ ?"



[ ଯଦୁନାଥ ଓ ରାମହରି କଥାବାର୍ତ୍ତା ହେଉଛନ୍ତି ]

ଯଦୁନାଥ କହିଲା, "ସେଥିରୁ ତୁମେ କ'ଣ ପାଇବ, ମୋ ଘରେ ଯେଉଁ ସୁନା ଜିନିଷ, ଟଙ୍କା ପଇସା ରହିଛି ତୁମେ ମୋ ଘରେ ରହିଲେ ତା'ର ମାଲିକ ହେବ । ମୁଁ ତୁମର ଏ ଭଙ୍ଗା ଘରେ ରହିବି । ମତେ ସେ ଘରେ ରହି ରହି ଡର ଲାଗିଲାଣି । ତମ କୁଡ଼ିଆ ଘରଟି ମୋ ପାଇଁ ଭଲ ।"

ଶେଷରେ ରାମହରି ଯଦୁନାଥ କଥାରେ ରାଜି ହେଲା । ସେ ଯଦୁନାଥର କପଟ ବୁଝି ପାରିଲା ନାହିଁ । ରାମହରି ଘରେ ଆସି ଯଦୁନାଥ ରହିଲା ।

ଯଦୁନାଥର ମନେଥାଏ ଯେ ରାତିରେ ଶିବ ଆସି ଛପରଘର କଣା ବାଟେ ସୁନାମୁଣ୍ଡା ବରଷା କରିବେ । ସୁନାମୁଣ୍ଡା ଗୋଟା ରଖିବ ବୋଲି ସେ ବଡ଼ ବଡ଼ ଟୋକେଇ ଆଣି ରଖିଲା । ନିଜ ସ୍ତ୍ରୀକୁ ଆଉ ଗୋଟିଏ ଘରକୁ ବିଦାକରି ଦେଇ ଯେଉଁ ଘରର ଚାଳ ବେଶୀ ଫୁଟା ସେଇ ଘରେ ସେ ନିଜେ ଜଗି ବସିଲା ।

ସଞ୍ଜ ଯାଇ ରାତି ହେଲା । ଯଦୁନାଥ କେତେବେଳେ ସୁନା ବରଷା ହେବ ବୋଲି ଅନାଇ ବସିଥାଏ । ଛପର ଛାତର କଣାକୁ ଅନାଇ ବସି ବସି ତା' ଆଖିରୁ ପାଣି ମଲା; କିନ୍ତୁ ସୁନା ମୋହର ବରଷା ହେଲା ନାହିଁ । ରାତି ବେଶୀ ହେଲରୁ ତାକୁ ନିଦ ମାଡ଼ିଲା । ସେ ଘୁମେଇ ପଡ଼ିଲା । କେତେବେଳେକେ ତା ଘୁମ ଭାଙ୍ଗିଗଲା । ସେ ଦେଖିଲା ଘର ସାରା କ'ଣ ସବୁ ଜକ୍‌ଜକ୍ ହୋଇ ଦିଶୁଛି । ସୁନା ମୋହର ବୋଲି ସେ ଆଗ୍ରହରେ ଦୌଡ଼ଯାଇ ଦେଖିଲା, ସେଗୁଡ଼ିକ ସୁନା ମୋହର ନୁହେଁ । ଘରର ଛପର ଚାଳ କଣାଦେଇ ଜହ୍ନ ଆଲୁଅ ଆସି ଘର ଭିତରେ ପଡ଼ିଛି । ସେଇ ଛାପିଛାପିକିଆ ଜହ୍ନ ଆଲୁଅ ସୁନା ମୋହର ଭଳି ଚକ୍ ଚକ୍ ଦିଶୁଛି । ସୁନା ମୋହର ନପାଇ ସେ ଥକାମାରି ବସିଲା । ରାତି ପାହି ସକାଳ ହେଲା । ସେ ଘରେ ଆଉ ସୁନାମୁଣ୍ଡା ବରଷା ହେଲା ନାହିଁ ।

ତା'ଆରଦିନ ଯଦୁନାଥ ସ୍ତ୍ରୀ ଦେଖିଲା କବାଟ କଣରେ ବସି ଯଦୁନାଥ କାନ୍ଦୁଛି । ସେ ନିଜ ସ୍ୱାମୀଙ୍କ ପାଖକୁ ଯାଇ ପଚାରିଲା, "ତୁମେ କାନ୍ଦୁଛ କାହିଁକି ?"

ଯଦୁନାଥ କହିଲା, "ଠାକୁର ମିଛ କହନ୍ତି ଜାଣି ମତେ କାନ୍ଦ ମାଡ଼ୁଛି ।"

ଯଦୁନାଥର ସ୍ତ୍ରୀ ଠାକୁରେ କଣ ମିଛ କହିଲେ ତାହା ବୁଝି ପାରିଲା ନାହିଁ । ଯଦୁନାଥ କହିଲା, "ଦେବତା ଏ ଘରେ ସୁନାମୁଣ୍ଡା ବରଷା କରିବେ ବୋଲି କହିଥିଲେ । ସେଥିପାଇଁ ମୁଁ ରାମହରିକୁ ମୋ ଘର, ଧନ ସମ୍ପତ୍ତି ବଦଳ ଦେଇ ଏ ଭଙ୍ଗା ଘରକୁ ଆସିଲି; କିନ୍ତୁ ଠାକୁରେ ତ କାହିଁକି କାଲି ଏଠି ସୁନାମୁଣ୍ଡା ବରଷା କଲେ ନାହିଁ ? ଏଥିରୁ କ'ଣ ଜଣା ପଡ଼ୁନି ଯେ ଠାକୁରେ ମଧ୍ୟ ମିଛ କହନ୍ତି ।"

ଯଦୁନାଥଠାରୁ ସବୁ କଥା ଶୁଣିସାରି ତା'ର ସ୍ତ୍ରୀ ସବୁ ବୁଝିପାରିଲା । ସେ କହିଲା, "ନା, ତୁମେ ଭୁଲ୍ ବୁଝିଛ । ଠାକୁର କେବେ ମିଛ କହନ୍ତି ନାହିଁ । ଶିବ କହିଥିଲେ ରାମହରି ଘରେ ସୁନା ବରଷା କଲେ ସେ ସୁଖରେ ରହିବ । ତୁମେ ରାମହରିକୁ ଆମ ଘରଟି ଦେଇ ଦେଲ । ଆମ ଘରେ ବହୁତ ସୁନା ଜିନିଷ ଥିଲା । ରାମହରି ତା' ପାଇଗଲା । ଠାକୁରଙ୍କ କଥା ସତ ହେଲା । ତୁମେ ସୁନା ପାଇଁ ଲୋଭ କରିବାରୁ କିଛି ପାଇଲ ନାହିଁ । ଲୋଭ କଲେ ଏହାହିଁ ଫଳ ହୁଏ ।"

ଯଦୁନାଥ ନିଜ ଭୁଲ୍ ବୁଝିପାରିଲା । ଅତି ଲୋଭ କରିଥିବାରୁ ତା'ର ସବୁ ଧନସମ୍ପତ୍ତି, ଘରବାଡ଼ି ଗଲା ବୋଲି ସେ ଜାଣିପାରିଲା ।





ଥରେ ଜଣେ ଚାଷୀ ବିଲକୁ ହଳ ନେଇ ଯାଉଥିଲା । ସେ ତା ହଳରେ ଗୋଟିଏ କଳା ଓ ଗୋଟିଏ ଧଳା ବଳଦ ଯୋଚିଥିଲା । କଳା ବଳଦଟି କାମ କରି କରି ହଡ଼ା ହୋଇଯାଇଥିଲା । ଆଉ କାମ କରିବାକୁ ତା'ର ବଳ ନଥିଲା । ଧଳା ବଳଦ ସାଙ୍ଗରେ ପାହୁଲ ମିଳାଇ ଚାଲିପାରୁ ନଥିଲା ।

ବିଲକୁ ଯିବା ବାଟରେ ଗୋଟିଏ ବଣ ପଡ଼ିଲା । ଚାଷୀ ସେଇ ବଣବାଟେ ଯାଉ ଯାଉ ଗୋଟିଏ ସିଂହ ହାବୁଡ଼ରେ ପଡ଼ିଲା । ଚାଷୀ ଭାବିଲା ସିଂହ ତାକୁ ଆସି ମାରି ଖାଇଯିବ; କିନ୍ତୁ ପ୍ରକୃତରେ ସିଂହ ତାହା କଲା ନାହିଁ । ସେ ସିଂହଟି ଭାରି ଦୟାଳୁ । ସେ ଚାଷୀ ପାଖକୁ ଆସି କହିଲା, "ଚାଷୀ ଭାଇ ! ତୁମ କଳା ବଳଦଟି ହଡ଼ା ହୋଇଗଲାଣି । ହଳ ସାଙ୍ଗରେ ଚାଲି ପାରୁ-ନାହିଁ । ତୁମେ ତାକୁ ନେଇ ହଳ କରିବ କେମିତି ?"

ଚାଷୀ ସିଂହକୁ ଉତ୍ତର କହିଲା, "ସିଂହ ଭାଇ ! ମୁଁ ଗରିବ ଲୋକ । ଚାଷ କରି ଯେଉଁ ଧାନ ହୁଏ, ସେଥିରେ କଷ୍ଟେମଷ୍ଟେ ବରଷକ ଚଳେ । ଆଉ ଗୋଟିଏ ବଳଦ କିଣିବାକୁ ପଇସା ପାଇବି କୁଆଡୁ ?"

ଚାଷୀ କଥା ଶୁଣି ସିଂହ ମନରେ ଭାରି ଦୟା ହେଲା । ଚାଷୀର ଅସୁବିଧା ସେ ବୁଝି-ପାରିଲା । ଚାଷୀକୁ ଡାକି କହିଲା, "ଚାଷୀ ଭାଇ ! ତା'ହେଲେ ତୁମେ ଗୋଟିଏ କାମ କର । ଏ ହଡ଼ା ବଳଦକୁ ହଳରୁ ଫିଟାଇ ଦିଅ । ତା' ବଦଳରେ ମୋତେ ନେଇ ଯୁଆଳିରେ ଯୋଚିଦିଅ । ମୁଁ ତୁମ ହଳ କରିଦେବି ।"

ସିଂହ କଥା ଶୁଣି ଚାଷୀ ଭାରି ଖୁସି ହେଲା । ସେ କଳା ହଡ଼ା ବଳଦକୁ ଫିଟାଇ ଦେଇ ସିଂହକୁ ହଳରେ ଯୋଚିଦେଲା । ତା'ପରେ ତା ବିଲକୁ ହଳ କରିବାକୁ ନେଲା । ସିଂହ ପଶୁମାନଙ୍କ ରଜା । ସେ ଶିକାର କରି ପଶୁ ମାରି ଖାଏ । କାମଧନ୍ଦା ସେ କେବେ କରି ନ ଥିଲା । ଚାଷୀକୁ ସିନା ଗୋଟିଏ କଥା ନହସରେ ହଳ କରିଦେବି ବୋଲି କହିଦେଲା; ପ୍ରକୃତରେ ସେ ପାହାଡ଼ିଆ ଜମିରେ ହଳକରି ପାରିଲା ନାହିଁ । ଧଳା ବଳଦ ସାଙ୍ଗରେ ଚାଲି ନ ପାରି ବିଲରେ ସେ କେବଳ ଶୋଇବାକୁ ଲାଗିଲା । ସିଂହ ହଳରେ ନ ଚାଲିବାରୁ ପାଞ୍ଚଣ ଧରି ଚାଷୀ ତାକୁ ପିଟିବାକୁ ଲାଗିଲା । ଏଣେ ଯୁଆଳିରେ ସିଂହ ବେକ ତ ଯୋଚିହୋଇଛି, ସେ ଖସିଯିବ କେମିତି ? ବାଧ୍ୟ ହୋଇ ପାଞ୍ଚଣ ପାହାର ଖାଇ ହଳ କରିବାକୁ ଲାଗିଲା ।

ଏତିକିବେଳେ ପାଞ୍ଚ ଶିକାରୀ ହାତରେ ବନ୍ଧୁକ ଧରି ବଣକୁ ଶିକାର କରିବାକୁ ଯାଉଥିଲେ । ସେମାନଙ୍କୁ ଦେଖି ସିଂହ ଭାବିଲା ବୋଧହୁଏ ଋଷୀ ତାକୁ ହଳରେ ଯୋଚି ଶିକାରୀମାନଙ୍କ ପାଖକୁ ଖବର ପଠାଇଥିଲା । ଶିକାରୀମାନେ ବନ୍ଧୁକ ଧରି ତାକୁ ମାରିବାକୁ ଆସୁଛନ୍ତି । ଏକଥା ମନେ ମନେ ଭାବି ସେ ଋଷୀ ଉପରେ ରାଗିଗଲା । ଧଳା ବଳଦକୁ ଡାକି ଚୁପ୍ ଚୁପ୍ କହିଲା, "ବଳଦ ଭାଇ ! ତୁମର ଏ ମୁନିବଟି ଗୋଟିଏ ଖରାପ ଲୋକ । ମୁଁ ତା ଭଲ ଭଲ କରିବି ବୋଲି ଯୁଆଳିରେ ଯୋଚି ହେଲି । ସେ ମୋ ସହିତ ବିଶ୍ୱାସଘାତକତା କରି ଶିକାରୀମାନଙ୍କୁ ଡକାଇଲାଣି । ଶିକାରୀମାନେ ମତେ ମାରିଦେବେ । ମଣିଷ କଥାକୁ ମୋଟେ ବିଶ୍ୱାସ ନାହିଁ । ତୁମେ ମୋର ଟିକିଏ ଉପକାର କର । ତୁମ ଶିଙ୍ଗରେ ଯୁଆଳିକୁ ହୁଗୁଳା କରିଦିଅ । ମୁଁ ଖସି ଚାଲିଯିବି ।"

ସିଂହ କଥାକୁ ଧଳା ବଳଦ ବିଶ୍ୱାସ କଲା । ସେ ଭାବିଲା ସତରେ ମଣିଷଗୁଡ଼ାକ ଭାରି ସ୍ୱାର୍ଥପର । ପଶୁମାନଙ୍କୁ ଭାରି ହଇରାଣ କରୁଛନ୍ତି । ଏହା ଭାବି ସେ ନିଜ ଶିଙ୍ଗ ପୂରାଇ ହଳର ଯୁଆଳିକୁ ଉପରକୁ ଟେକି ଦେଲା । ଯୁଆଳି ହୁଗୁଳା ହୋଇଯିବା ସଙ୍ଗେ ସଙ୍ଗେ ସିଂହ ଖସି ବଣ ଭିତରକୁ ଦୌଡ଼ି ପଳାଇଗଲା ।

କିଛିଦିନ ପରେ ପୁଣି ଥରେ ଋଷୀ ସେଇ ବଣବାଟେ ଫେରୁଥିଲା । ହଠାତ୍ ସିଂହ ସହିତ ଦେଖା ହୋଇଗଲା । ଋଷୀକୁ ଦେଖି ସିଂହ କହିଲା, "ଋଷୀ ଭାଇ ! ଆଜି ମୁଁ ତୁମକୁ ଆଉ ଛାଡ଼ିବି ନାହିଁ । ଆରଥର ମୁଁ ତୁମକୁ ସାହାଯ୍ୟ କରିବାକୁ ଯାଇ ହଳ ଟାଣିଲି । ତୁମେ ମୋ ବେକରେ ଯୁଆଳି ପକାଇ ମତେ ଶିକାରୀଙ୍କ ହାତରେ ମାରିବାକୁ ବସିଲ । ମତେ ଆଜି ଭୋକ କରୁଛି । ମୁଁ ତୁମକୁ ଖାଇବି ।"

ସିଂହ କଥା ଶୁଣି ଋଷୀ ବିଚରା ଛାନିଆ ହୋଇଗଲା । ସେ ସିଂହକୁ କହିଲା, "ଦେଖ ଭାଇ ! ମୁଁ ମୋଟେ ସେଦିନ ଶିକାରୀଙ୍କୁ ଡକାଇ ନ ଥିଲି । ସେମାନେ ତାଙ୍କ ନିଜ କାମରେ ଯାଉଥିଲେ । ମୋର ସେଥିରେ କିଛି ଦୋଷ ନାହିଁ । ତୁମେ ମୋତେ ଖାଅ ନାହିଁ ।"

ଋଷୀ କଥାରେ ସିଂହ ମୋଟେ ରାଜି ହେଲା ନାହିଁ । ସେ କହିଲା, "ତୁମ ମଣିଷ ଜାତିକି ମୋଟେ ବିଶ୍ୱାସ ନାହିଁ । ଅସୁବିଧାରେ ପଡ଼ିଥିଲେ ତୁମେ କଅଁଳେଇ କଅଁଳେଇ କଥା କୁହ । ସୁବିଧା ପାଇଲେ ପଶୁମାନଙ୍କୁ ମାଡ଼ ଦିଅ । ମୋର ସେ ପାଞ୍ଚଣ ପାହାର କଥା ମନେଅଛି । ଆମେ ପଶୁ ହୋଇ ଜନମ ହୋଇଛୁ ବୋଲି କ'ଣ ସବୁବେଳେ ତୁମଠାରୁ ମାଡ ଖାଉଥିବୁ ? ନା ସେ କଥା ହେବନାହିଁ । ଆଜି ତୁମର ବଳ ବେଶୀ କି ମୋର ବଳ ବେଶୀ ତାହାର ପରୀକ୍ଷା ହେବ । ଯାହାର ବଳ ବେଶୀ ହେବ ସେ ତାକୁ ମାରିଦେବ । ତୁମେ ଡରିଯାଉଛ କାହିଁକି ?"

ଋଷୀ ଦେଖିଲା, ସିଂହ ତାକୁ ଆଜି ନ ଖାଇ ଛାଡ଼ିବ ନାହିଁ । ସେ ମନେ ମନେ ଗୋଟାଏ ଉପାୟ ପାଞ୍ଚିଲା । ସିଂହକୁ କହିଲା, "ସିଂହଭାଇ ! ତୁମେ ମୋର ଗୋଟିଏ କଥା ଶୁଣ । ତୁମେ ସେଦିନ ମୋର ହଳରେ ବହୁତ ଉପକାର କରିଛ । ମୁଁ ତୁମର କିଛି କ୍ଷତି କରିବି ନାହିଁ । ଉପକାରୀ ଲୋକର କ୍ଷତି କଲେ

ପାପ ହେବ । ମୋର ଗୋଟିଏ କଥା ସନ୍ଦେହ ହେଉଛି । ତୁମ ପାଟିଟା ତ ଭାରି ଛୋଟ ଦିଶୁଛି । ସେ ଛୋଟ ପାଟିରେ ତୁମେ ମୋତେ ଗିଳିବ କେମିତି ? ମୋ ମୁଣ୍ଡଟା ତ ବଡ଼ । ତୁମ ପାଟିରେ ତା' ବା ପଶିବ କେମିତି ? ତୁମେ ଟିକିଏ ଆଁ କରି ତୁମ ବଡ଼ ପାଟି ଦେଖାଅ । ଯଦି ତୁମର ପାଟି ବଡ଼ ହୋଇଥିବ, ମୁଁ ତା' ଭିତରେ ମୁଣ୍ଡ ପୂରାଇ ଦେବି । ତୁମେ ଆନନ୍ଦରେ ଖାଇପାରିବ ।"



[ ପାଟି ମେଲାକରିଥିବା ସିଂହକୁ ଲକ୍ଷ୍ୟ କରି ଚାଷୀଟି କୁରାଢ଼ି ପୋପାଡ଼ୁଛି ]

ଚାଷୀ କଥା ଶୁଣି ସିଂହ ମନେ ମନେ ଭାରି ଖୁସି ହେଲା । ସେ ଭାବିଲା, ଚାଷୀ ସଙ୍ଗରେ ଲଢ଼େଇ କଲେ, ସେ ପାଟି ତୁଣ୍ଡ କରିବ । ପାଟିତୁଣ୍ଡ ଶୁଣି ଗାଁ ଗଣ୍ଡାର ଲୋକମାନେ ଆସିପାରନ୍ତି । ସେ ଯଦି ଆପେ ଆପେ ମୋ ପାଟି ଭିତରକୁ ଡେଇଁପଡ଼େ, ତେବେ ସହଜରେ ମୁଁ ତାକୁ ଗିଳିଦେବି । ଏହା ଭାବି ସେ ତା' ପାଟି ମେଲାକରି ଦେଖାଇଲା ।

ସିଂହର ଧାରୁଆ ଖଣ୍ଡା ଭଳି ଦାନ୍ତମାନ ଦେଖି ଋଷୀର କଲିଜା ଥରି ଉଠିଲା । ତଥାପି ସେ ଡରିଗଲା ନାହିଁ । ସିଂହକୁ କହିଲା, "ମୁଁ ତୁମ ପାଟି ଦେଖିଲି; କିନ୍ତୁ ତୁମ ପେଟଟି ଭାରି ଛୋଟିଆ ଦିଶୁଛି । ମୁଁ କ'ଣ ତମର ଛୋଟିଆ ପେଟରେ ଜାଗା ହେବି ? ତୁମେ ଗୋଟିଏ କଥା କର । ମୁଁ ଗଛରେ ଚଢ଼ୁଛି । ତୁମେ ବଡ଼ ଆଁ କର । ତା'ପରେ ଗଛ ଉପରୁ ତୁମ ପାଟି ଭିତରକୁ ଡେଇଁ ପଡ଼ିଲେ ତୁମେ ଗିଳିଦେବ ।"

ଋଷୀ କଥାରେ ସିଂହ ରାଜି ହେଲା । ଋଷୀ ଗୋଟିଏ ଉଚ୍ଚ ଗଛରେ ଚଢ଼ିଲା । ଗଛ ତଳେ ବସି ସିଂହ ତା'ର ପାଟିକୁ ମେଲି କଲା । ଋଷୀ ଗାମୁଛା ଦେହରେ ଗୁଡ଼ାଇ ଗୋଟିଏ ଧାରୁଆ କୁରାଢ଼ି ରଖିଥିଲା । ସିଂହ ତା' ପାଟି ମେଲାଇଲା କ୍ଷଣି ସେ ସେଇ କୁରାଢ଼ିଟାକୁ ବାହାର କରି ତା' ପାଟି ଭିତରକୁ ଜୋରରେ ଫୋପାଡ଼ି ଦେଲା । କୁରାଢ଼ିଟି ପାଟିବାଟେ ପଶିଯାଇ ସିଂହର ତଣ୍ଟିକୁ କଣା କରିଦେଲା । କୁରାଢ଼ି ଆଘାତରେ ତଳେ ପଡ଼ିଯାଇ ସିଂହ ଛଟପଟ ହେବାକୁ ଲାଗିଲା ।

ଗଛ ଉପରେ ଥାଇ ଋଷୀ କହିଲା, "ପଶୁମାନଙ୍କ ବଳ ମଣିଷଠାରୁ ବେଶୀ ବୋଲି ମାନୁଛି ସତ; ହେଲେ ମଣିଷର ବୁଦ୍ଧି ପଶୁଠାରୁ ଖୁବ୍ ବେଶୀ । ସେଥିପାଇଁ ଦୁର୍ବଳ ହୋଇ ସୁଦ୍ଧା ମଣିଷ ପଶୁମାନଙ୍କଠାରୁ ବଡ଼ । ତୁମର ବେଶୀ ବଳ ଥିଲା ବୋଲି ତୁମେ ମତେ ଖାଇବାକୁ ବସିଥିଲ; କିନ୍ତୁ ତୁମେ କ'ଣ ମୋତେ ଖାଇ ପାରିଲ ? ଯେତେ ହେଲେ ମୁଁ ମଣିଷଟି !"





# ଗଧ ମଣିଷ ହେଲା

ମଧୁପୁର ଗାଁରେ ଗୋଟିଏ ସ୍କୁଲ ଅଛି । ସେହି ସ୍କୁଲରେ ଗାଁର ପିଲାମାନେ ଆସି ପାଠ ପଢ଼ନ୍ତି । ସ୍କୁଲକୁ ଲାଗି ଗୋଟିଏ ପଡ଼ିଆ ଅଛି । ସେହି ପଡ଼ିଆରେ ଗାଈଆଳ ପିଲାଏ ଗାଈ ଜଗନ୍ତି । ସ୍କୁଲରେ ପାଠପଢ଼ା ହେବାବେଳେ ମାଧବ ବୋଲି ଗୋଟିଏ ଗାଈଆଳ ପିଲା ସ୍କୁଲ ପିଣ୍ଡା ପାଖରେ ଠିଆ ହୋଇ ପିଲାଙ୍କ ପାଠପଢ଼ା ଶୁଣେ ।

ଦିନେ ସ୍କୁଲରେ ଶିକ୍ଷକ ପଢ଼ାଉଥିଲେ । ଶ୍ରେଣୀରେ ଗୋଟିଏ ପିଲା ଶିକ୍ଷକଙ୍କ ପ୍ରଶ୍ନର ଉତ୍ତର ଦେଇ ପାରିଲା ନାହିଁ । ଶିକ୍ଷକ ତା' ଉପରେ ରାଗିକରି କହିଲେ, "ତୁ ଗଧଟା ଆଉ ମଣିଷ ହେବୁନାହିଁ । ସବୁଦିନେ ପାଠ ନ ପଢ଼ି ସ୍କୁଲକୁ ଆସୁଛୁ ।"

ମାଧବ ପିଣ୍ଡାରେ ବସି ସବୁ ଶୁଣୁଥିଲା । ଶିକ୍ଷକ ଯେତେବେଳେ ପାଠ ନ ଆସୁଥିବା ପିଲାଟିକୁ ଗଧଟା ମଣିଷ ହେବୁ ନାହିଁ ବୋଲି କହିଲେ ସେ ତାହା ଶୁଣିଥିଲା । ସେ ଭାବିଲା ବୋଧହୁଏ ଗଧଗୁଡ଼ାକୁ ପାଠ ପଢ଼ାଇ ଶିକ୍ଷକ ଏଠାରେ ମଣିଷ କରି ଦେଉଛନ୍ତି । ଯେଉଁ ଗଧ ଶିକ୍ଷକଙ୍କ ପ୍ରଶ୍ନର ଉତ୍ତର ଦେଇ ପାରୁଛି, ସେ ମଣିଷ ହୋଇଯାଉଛି । ମାଧବ ପାଠଶାଠ କିଛି ପଢ଼ି ନ ଥିଲା । ତେଣୁ ଶିକ୍ଷକଙ୍କ କଥାର ଅସଲ ଅର୍ଥ ସେ ବୁଝିପାରିଲା ନାହିଁ ।

ତେଣୁ ସେ ଭାବିଲା ଗୋଟାଏ ଗଧ ଆଣି ଏହି ମାଷ୍ଟ୍ରଙ୍କ ପାଖରେ ଛାଡ଼ିବି । ସେ ତାକୁ ମଣିଷ କରିଦେବେ । ସେ ମଣିଷ ମୋର ଗାଈ ଜଗିବ । ମୁଁ ଆରାମରେ ରହିବି । ଏହା ଭାବି ନିଜର ଦୁଇଟି ଦୁଧିଆଳ ଗାଈଙ୍କୁ ନେଇ ହାଟରେ ବିକ୍ରୀ କଲା । ସେହି ଗାଈବିକା ଟଙ୍କାରେ ଗୋଟିଏ ଗଧ କିଣିଲା । ତା ଆରଦିନ ସ୍କୁଲକୁ ଆସି ଶିକ୍ଷକଙ୍କୁ କହିଲା, "ଆଜ୍ଞା ! ମୁଁ ଗୋଟିଏ ଗଧ ଆଣିଛି । "ଆପଣ ଏହାକୁ ମଣିଷ କରି ଦିଅନ୍ତୁ ।"

ମାଧବ କଥା ଶୁଣି ଶିକ୍ଷକ ପ୍ରଥମେ କିଛି ବୁଝିପାରିଲେ ନାହିଁ । ସେ ପଚାରିଲେ; ଗଧଟା ମଣିଷ ହେବ କିପରି ?"

ମାଧବ କହିଲା, "ଆପଣ କାଲି ଶ୍ରେଣୀରେ କହୁଥିଲେ ତୁ ଗଧଟା ଆଉ ମଣିଷ ହେବୁ ନାହିଁ । କାରଣ ସେ ଗଧ ଆପଣଙ୍କ ପ୍ରଶ୍ନର ଠିକ୍ ଉତ୍ତର ଦେଇପାରିଲା ନାହିଁ । ମୁଁ ଗୋଟିଏ ଗଧ ବହୁ ଟଙ୍କା ଦେଇ କିଣି ଆଣିଛି । ଏ ଗଧଟି ଭାରି ଚତୁର । ଆପଣ ଏହାକୁ ପାଠ ପଢ଼ାନ୍ତୁ । ଦେଖିବେ, ଏ ଆପଣଙ୍କ ପ୍ରଶ୍ନର ଠିକ୍ ଠିକ୍ ଉତ୍ତର ଦେଇ ମଣିଷ ହୋଇଯିବ ।"

ମାଧବ କଥା ଶୁଣି ଶିକ୍ଷକ ତାର ବୋକାମି ବୁଝିପାରିଲେ । ମାଧବକୁ କହିଲେ, "ଏଠି ବହୁତ ଗଧ ଅଛନ୍ତି । ମୁଁ ସେମାନଙ୍କୁ ପାଠ ପଢ଼ାଉଛି । ଆଉ ଅଧିକ ଗଧ ରଖିବା ସମ୍ଭବ ହେବ ନାହିଁ । ତୁମେ କାଶୀ ଯାଅ । ସେଠାରେ ଜଣେ ବଡ଼ ପଣ୍ଡିତ ଅଛନ୍ତି । ସେ ତୁମ ଗଧକୁ ମଣିଷ କରିଦେବେ । ମୁଁ ତାଙ୍କୁ ଖଣ୍ଡେ ଚିଠି ଲେଖିଦେଉଛି, ସେ ଚିଠି ପଢ଼ିଲେ ତୁମକୁ ତାଙ୍କ ପାଖରେ ରଖିବେ ।"

ଶିକ୍ଷକ ଖଣ୍ଡେ ଚିଠି ଲେଖିଦେଲେ । ସେ ଚିଠି ଖଣ୍ଡିକ ଧରି ମାଧବ କାଶୀ ଗଲା । କାଶୀର ଗୋଟିଏ ବଡ଼ ବିଦ୍ୟାଳୟରେ ସେହି ପଣ୍ଡିତ ପାଠ ପଢ଼ାଉଥିଲେ । ସେ ପଣ୍ଡିତଙ୍କୁ ଭେଟି ମାଧବ ଶିକ୍ଷକଙ୍କ ଚିଠିଖଣ୍ଡିକ ଦେଲା । କହିଲା, "ଆଜ୍ଞା ! ମୁଁ ଗୋଟିଏ ଗଧ ଆଣିଛି । ଆପଣ ତାକୁ ପାଠ ପଢ଼ାଇ ମଣିଷ କରିଦିଅନ୍ତୁ ।"

ପଣ୍ଡିତେ ଚିଠିଖଣ୍ଡିକ ପଢ଼ିଲେ । ସେଥିରେ ଶିକ୍ଷକ ମହାଶୟ ଲେଖିଥିଲେ, "ମାଧବ ଗୋଟାଏ ଗଧ । ସେ ପାଠଶାଠ କିଛି ପଢ଼ିନାହିଁ । ଆପଣ ତାକୁ ପାଠ ପଢ଼ାଇ ମଣିଷ କରିଦିଅନ୍ତୁ ।"

ପଣ୍ଡିତେ ଚିଠି ଖଣ୍ଡିକ ପଢ଼ିସାରି ମାଧବକୁ କହିଲେ, "ତୁମେ ମୋ ପାଖରେ ରୁହ । ଗଧ ବି ଏଠାରେ ରହିବ । ତୁମେ ପାଠ ପଢ଼ିଲା ବେଳେ ସେ ଶୁଣିବ । ସେ ଶୁଣି ଶୁଣି ପାଠ ଶିଖିଯିବ । ପାଠ ଶିଖି ସାରିଲା ପରେ ଆପେ ଆପେ ମଣିଷ ହୋଇଯିବ ।"

ମାଧବ ପଣ୍ଡିତଙ୍କ କଥା ମାନି ତାଙ୍କ ପାଖରେ ରହିଲା । ପଣ୍ଡିତେ ମାଧବକୁ ମୂଳରୁ ଅକ୍ଷର ଶିଖାଇବା ଆରମ୍ଭ କଲେ । ସେ ଅକ୍ଷର ଲେଖି ପଢ଼ି ଶିଖିଲା, ଛବି ବହି ପଢ଼ି ପାରିଲା, ଗୀତ ବୋଲି ଜାଣିଲା । ସ୍କୁଲରେ ଭଲ ପଢ଼େ ବୋଲି ତାର ସୁନାମ ହେଲା ।

ଦିନେ ପଣ୍ଡିତେ ତାକୁ ଖଣ୍ଡେ ଭଡ଼ ଅଙ୍କ କଷିବାକୁ ଦେଇଥିଲେ । ସେ ଅଙ୍କ ଖଣ୍ଡିକ ମାଧବ ଭୁଲ କରି ଦେଇଥିବା । ପଣ୍ଡିତେ ଚିଡ଼ି ଯାଇ ତାକୁ କହିଲେ, "ତୁ ଗଧଟା କଦାପି ମଣିଷ ହେବୁ ନାହିଁ । ସେତେ ବତାଇଲେ ବି ତୁ ଅଙ୍କ ଭୁଲ କରିଦେଉଛୁ ।

ପଣ୍ଡିତଙ୍କ କଥା ଶୁଣି ମାଧବ ତାଙ୍କ ମୁହଁକୁ ଚାହିଁରହିଲା । ହଠାତ୍ ତାଙ୍କ ଗାଁ ସ୍କୁଲ ଶିକ୍ଷକ ସେଦିନ କହିଥିବା କଥାପଦକ ତାର ମନେପଡ଼ିଗଲା । ସେ ବୁଝିପାରିଲା ଯେ, ଯେଉଁ ମଣିଷକୁ ପାଠ ନ ଆସେ ସେ ଗଧ ସହିତ ସମାନ । ପାଠ ପଢ଼ିଲେ ମଣିଷର ଜ୍ଞାନ ବଢ଼େ । ସେ ପଶୁଠାରୁ ବେଶୀ ବୁଦ୍ଧିଆ ହୁଏ । ଲୋକେ ତାକୁ ଆଦର କରନ୍ତି । ଶିକ୍ଷକ ସେଦିନ ପାଠ ନ ଆସୁଥିବା ଗୋଟିଏ ପିଲାକୁ ଗଧ ବୋଲି କହିଥିଲେ । ସେ ପାଠଶାଠ ପଢ଼ି ନଥିବାରୁ ଶିକ୍ଷକଙ୍କ କଥାର ଅସଲ ଅର୍ଥ ବୁଝିପାରି ନଥିଲା । ସେ ଭାବିଥିଲା ସତରେ ଗୋଟିଏ ଗଧକୁ ଶିକ୍ଷକ ପାଠ ପଢ଼ାଇ ମଣିଷ କରି ଦେଉଛନ୍ତି । ସେଥିପାଇଁ ତାଙ୍କ ଗାଁ ଶିକ୍ଷକ ତାକୁ ପାଠ ପଢ଼ିବାକୁ ଏଠାକୁ ପଠାଇ ଦେଇଥିଲେ ।

ପଣ୍ଡିତେ ପଚାରିଲେ, "ତୁମେ ମୋ ମୁହଁକୁ ଚାହିଁରହିଛ କାହିଁକି ? ମୋ ପ୍ରଶ୍ନର ଉତ୍ତର ଦିଅ ।"

ମାଧବ କହିଲା, "ମୋର ପାଠପଢ଼ା ଦରକାର ନାହିଁ । ଯେଉଁ କାମ ପାଇଁ ମୁଁ ଆପଣଙ୍କ ପାଖକୁ ଆସିଥିଲି, ସେ କାମ ମୋର ହୋଇଗଲା । ମୁଁ ଏଥର ଯାଉଛି ।"

ଏହା କହି ସେ ବିଦ୍ୟାଳୟରୁ ଉଠି ଆସିଲା । ପାଖରେ ଗୋଟିଏ ଖୁଣ୍ଟରେ ତା ଗଧଟି ବନ୍ଧା ହୋଇଥିଲା । ସେ ତାକୁ ଖୋଲିଦେଲା ଗଧ । ଉପରେ ବସି ଗାଁକୁ ଆସିଲା ।



[ ମାଧବ ନିଜର ନିର୍ବୋଧତା ଶିକ୍ଷକ ନିକଟରେ ପ୍ରକାଶ କରୁଛି ]

ଗାଁ ସ୍କୁଲରେ ଶିକ୍ଷକ ସେତେବେଳେ ପାଠ ପଢ଼ାଉଥିଲେ । ଗଧ ପିଠିରୁ ଓହ୍ଲାଇ ମାଧବ ସ୍କୁଲ ଭିତରକୁ ଗଲା । ଶିକ୍ଷକଙ୍କୁ ନମସ୍କାର କଲା । ତାଙ୍କୁ କହିଲା, "ଗଧ ଏଥର ମଣିଷ ହୋଇଛି । ଆପଣ ଦୟା କରିନଥିଲେ ସେ ଗଧ ଏବେ ବି ଗୋରୁ ଚରାଉଥାଆନ୍ତା ।"

"ଶିକ୍ଷକ ପଚାରିଲେ, ଗଧ ମଣିଷ ହେଲା କେମିତି ?"

ମାଧବ କହିଲା, "କାଶୀର ବିଦ୍ୟାପୀଠରେ ସେ ଗଧ ଆପଣଙ୍କ ଚିଠି ନେଇ ପହଞ୍ଚିଲା । ଚିଠିଟି ପଣ୍ଡିତଙ୍କୁ ଦେଲା । ସେ ଚିଠିଟି ପଢ଼ି ତାକୁ ପାଠ ପଢ଼ାଇଲେ । ସେ ଗଧର ଜ୍ଞାନହେବା ପରେ ସେ ମଣିଷ ହୋଇଗଲା । ପାଠ ପଢ଼ିଲେ ହିଁ ମଣିଷ ଗଧ ହୋଇ ମଣିଷ ହୁଏ ।"

ମାଧବରେ ଗଧଟି ଆଡ଼କୁ ଆଙ୍ଗୁଠି ଦେଖାଇ ଶିକ୍ଷକ ପଚାରିଲେ ଯେଉଁ ଗଧଟି ମଣିଷ ହେଲା, ସେ ଗଧ କଣ ଏହି ?

ମାଧବ କହିଲା, "ନା'—ସେ ଗଧ ହେଉଛି ମୁଁ ନିଜେ । ମୁଁ ପାଠ ନ ପଢ଼ିଥିବାରୁ ମଣିଷ ହୋଇ ସୁଦ୍ଧା ମୋ ବୁଦ୍ଧି ଗଧଠାରୁ ଆହୁରି କମ୍ ଥିଲା । ସେଥିପାଇଁ ମୁଁ ଆପଣଙ୍କ କଥା ସେଦିନ ବୁଝିପାରିନଥିଲି । ପାଠପଢ଼ି ଜ୍ଞାନ ଅର୍ଜନ କଲାପରେ ମୁଁ ସେକଥା ବୁଝିପାରିଲି । ମଣିଷ ଭଳି ସବୁକଥା ବିଚାର କରି ପାରିଲି ।"

ପାଠପଢ଼ି ନାଁ କରିଥିବାରୁ ମାଧବକୁ ଶିକ୍ଷକ ଖୁବ୍ ପ୍ରଶଂସା କଲେ ।





# ରାଜାର ନୁହେଁ ସେ ବନ୍ଧୁ

ବହୁ ବର୍ଷ ତଳର ଏକ ଘଟଣା ।

ଉଜ୍ଜୟିନୀ ନାମକ ଏକ ଇତିହାସପ୍ରସିଦ୍ଧ ନଗରରେ ଏହି ଘଟଣାଟି ଘଟିଥିଲା । ରାଜା ବିକ୍ରମାଦିତ୍ୟ ସେତେବେଳେ ଉଜ୍ଜୟିନୀରେ ରାଜତ୍ୱ କରୁଥିଲେ । ଆଜିକାଲି ଆମ ଦେଶରେ ରାଜା ନାହାନ୍ତି କିମ୍ବା ସେମାନଙ୍କର ରାଜତ୍ୱ ନାହିଁ; କିନ୍ତୁ ଏଠାରେ ଯେଉଁ ସମୟର ଘଟଣା କୁହାଯାଉଛି, ସେତେବେଳେ ଭାରତ ଅନେକ ଗୁଡ଼ିଏ ରାଜ୍ୟରେ ଭାଗ ଭାଗ ହୋଇ ରହିଥିଲା । ପ୍ରତି ରାଜ୍ୟକୁ ଜଣେ ଜଣେ ରାଜା ଶାସନ କରୁଥିଲେ । କିନ୍ତୁ ସେତେବେଳେ ଭାରତରେ ଯେତେଜଣ ରାଜା ରାଜତ୍ୱ କରୁଥିଲେ, ବିକ୍ରମାଦିତ୍ୟ ସେମାନଙ୍କ ମଧ୍ୟରେ ସବୁଠାରୁ ବଳି ନ୍ୟାୟବନ୍ତ ରାଜା ଥିଲେ । ତାଙ୍କର ସୁଖ୍ୟାତି ଚାରିଆଡ଼େ ରହିଥିଲା ।

ବିକ୍ରମାଦିତ୍ୟ ତାଙ୍କ ମନ୍ତ୍ରୀ, ସେନାପତି ଭଳି ଉଚ୍ଚପଦସ୍ଥ କର୍ମଚାରୀମାନଙ୍କଠାରୁ ଆରମ୍ଭ କରି ନିଜ ରାଜପ୍ରାସାଦର ସାଧାରଣ ଭୃତ୍ୟମାନଙ୍କୁ ମଧ୍ୟ ଭାରି ସ୍ନେହ କରୁଥିଲେ । ରାଜାଙ୍କ ଭୃତ୍ୟମାନଙ୍କ ମଧ୍ୟରେ ଜଣେ ବୃଦ୍ଧ ଭୃତ୍ୟ ଥିଲା । ରାଜା ସବୁ ଭୃତ୍ୟମାନଙ୍କଠାରୁ ସେହି ଭୃତ୍ୟକୁ ବେଶୀ ସ୍ନେହ କରୁଥିଲେ ।

ରାଜାଙ୍କର ଅନ୍ୟାନ୍ୟ ଭୃତ୍ୟମାନେ ଭାବିଲେ ଯଦି ବୃଦ୍ଧ ଭୃତ୍ୟକୁ ରାଜାଙ୍କ ପାଖରେ ଅପ୍ରିୟ କରାଇ ନ ଦିଆଯାଏ ତେବେ ରାଜା ସେମାନଙ୍କୁ ଆଦୌ ସ୍ନେହ କରିବେ ନାହିଁ; ତେଣୁ ସେମାନେ ବୃଦ୍ଧ ଭୃତ୍ୟର କଣ ଦୋଷ ଅଛି ମନେ ମନେ ଖୋଜିବାକୁ ଆରମ୍ଭ କଲେ ।

ଦିନେ ରାଜା ସଭାରୁ ଫେରୁଛନ୍ତି, ଜଣେ ଭୃତ୍ୟ ତାଙ୍କ ପାଖକୁ ଯାଇ ହାତଯୋଡ଼ି ନମସ୍କାର କଲା । ରାଜା ତାକୁ ଦେଖା କରିବାର କାରଣ ପଚାରିବାରୁ ସେ କହିଲା, "ଆଜ୍ଞା ! ମୁଁ ଗୋଟିଏ ଗୁରୁତ୍ୱପୂର୍ଣ୍ଣ କଥା ଆପଣଙ୍କୁ କହିବାକୁ ଆସିଅଛି ! ଆପଣ ଯଦି ମତେ ଅନୁମତି ଦେବେ ତେବେ ମୁଁ ତା କହିବି ।"

ରାଜା ନିଜର ଜଣେ ଭୃତ୍ୟ ମୁହଁରୁ ଏଭଳି କଥା ଶୁଣି ଆଶ୍ଚର୍ଯ୍ୟ ହେଲେ । ସେ କହିଲେ, "ତୁମେ ଏତେ ଭୟ କରିବାର କିଛି କାରଣ ନାହିଁ । ତୁମେ ଯାହା କହିବାକୁ ଚାହଁ ତାହା ନିର୍ଭୟରେ ପ୍ରକାଶ କର ।"

ଭୃତ୍ୟଟି ବିନୀତ ଭାବରେ କହିଲା, "ଆଜ୍ଞା ! ବୃଦ୍ଧ ଭୃତ୍ୟ ଆପଣଙ୍କ ଭଣ୍ଡାରରୁ ସବୁଦିନେ ରାତିରେ ଯାଇ ଚୋରି କରୁଛି ।"

ବ୍ରହ୍ମଦତ୍ତ ନିଜର ଜଣେ ସାଧାରଣ ଭୃତ୍ୟ ମୁହଁରୁ ଏକଥା ଶୁଣି ଆଶ୍ଚର୍ଯ୍ୟ ହେଲେ । ତାଙ୍କର ବୃଦ୍ଧ ଭୃତ୍ୟ ଯେ ତାଙ୍କ ରାଜ ଭଣ୍ଡାରରୁ ରାତିରେ ଯାଇ ଚୋରି କରୁଛି ଏକଥା ସେ ଆଦୌ ବିଶ୍ୱାସ କରି-ପାରିଲେ ନାହିଁ । ତା ବଦଳରେ ବୃଦ୍ଧ ଭୃତ୍ୟକୁ ଚୋର ବୋଲି କହୁଥିବା ଭୃତ୍ୟକୁ ସେ ଗାଳି ଦେଇ କହିଲେ, "ତୁମେ ସେ ବୃଦ୍ଧ ଭୃତ୍ୟ ବିରୁଦ୍ଧରେ ଆଉ କେବେ ଏଭଳି ଅଭିଯୋଗ କରିବ ନାହିଁ । ସେ ପିଲାଦିନରୁ ଏଠାରେ କାର୍ଯ୍ୟକରି ଆସୁଅଛି । ଚୋରର ଲକ୍ଷଣ ତା'ଠାରେ କେବେହେଲେ ଦେଖା ଯାଇନାହିଁ । ସେ ଚୋରି କରୁଛି ବୋଲି ମୁଁ କଦାପି ବିଶ୍ୱାସ କରିପାରିବି ନାହିଁ ।"

ରାଜାଙ୍କ ପାଖରୁ ଏଭଳି ଉତ୍ତର ପାଇବ ବୋଲି ଭୃତ୍ୟଜଣକ କେବେହେଲେ ଭାବି ନ ଥିଲା । ତେଣୁ ମନେ ମନେ ଲଜ୍ଜିତ ହୋଇ ସେ ସେଠାରୁ ପଳାଇଗଲା ।

ତା' ଆରଦିନ ଆଉ ଜଣେ ଭୃତ୍ୟ ମଧ୍ୟ ରାଜାଙ୍କ ପାଖକୁ ଯାଇ ବୃଦ୍ଧ ବିରୁଦ୍ଧରେ ଠିକ୍ ସେହି ଅଭିଯୋଗ କଲା । ରାଜା ଏଥିରେ ରାଗିଯାଇ କହିଲେ, "ତୁମେ ବୃଦ୍ଧ ଭୃତ୍ୟ ରାତିରେ ଚୋରି କରୁଥିବା କଥା ମତେ ପ୍ରମାଣ ଦେଇ ପାରିବ ?"

ଭୃତ୍ୟ ଜଣକ କହିଲା, "ହଁ ଆଜ୍ଞା ! ଆପଣ ମୋ ସହିତ ଆଜି ରାତି ବାରଟା ପରେ ଆସନ୍ତୁ । ମୁଁ ଆପଣଙ୍କୁ ନିଜେ ଦେଖାଇଦେବି ।"

ରାଜା ଭୃତ୍ୟ କଥାରେ ରାଜି ହେଲେ ।

ରାତି ବାରଟା ପରେ ଭୃତ୍ୟ ଜଣକ ରାଜାଙ୍କୁ ସଙ୍ଗରେ ନେଇ ଗଲା । ରାଜା ଦେଖିଲେ ସତକୁ ସତ ତାଙ୍କର ପ୍ରିୟ ବୃଦ୍ଧ ଚାକରଟି ତାଲା ଖୋଲି ଭଣ୍ଡାର ଗୃହରେ ପ୍ରବେଶ କଲା ।

ଏତେ ରାତିରେ ବୁଢ଼ା ଚାକର ଭଣ୍ଡାରଘର ଖୋଲି ପ୍ରବେଶ କରୁଛି ଦେଖି ରାଜାଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେ ମଧ୍ୟ ଲୁଚି ଚାକରର ପଛେ ପଛେ ଗୃହ ମଧ୍ୟରେ ପ୍ରବେଶ କଲେ ।

ତା'ପରେ ରାଜା ଦେଖିଲେ, ସେହି ବୁଢ଼ା ଚାକରଟି ସୁନା ଅଳଙ୍କାର ଥିବା ଗୋଟିଏ ସିନ୍ଦୁକ ଖୋଲୁଅଛି । ଏଥର ରାଜାଙ୍କର ଆଉ ସନ୍ଦେହ ରହିଲା ନାହିଁ ଯେ ସେ ଚୋରି କରିବାକୁ ଆସିଅଛି । ସେ କେଉଁ ସୁନା ଜିନିଷମାନ ଚୋରି କରିବ ତାହାହିଁ କେବଳ ଲକ୍ଷ୍ୟ କରିବାକୁ ସେ ଅପେକ୍ଷା କଲେ ।

ବୁଢ଼ା ଚାକରଟି ସୁନା ଅଳଙ୍କାର ମଧ୍ୟରୁ ଗୋଟିଏ ଛୋଟ ସୁନାତିଆରି ବାକ୍ସ କାଢ଼ିଲା । ସେହି ସୁନା ବାକ୍ସ ମଧ୍ୟରୁ ସେ ଗୋଟିଏ ସୁନ୍ଦର ଭଗବାନ ଶ୍ରୀକୃଷ୍ଣ ମୂର୍ତ୍ତି ବାହାର କଲା । ଅନ୍ଧକାର ଭିତରେ ମଧ୍ୟ ସେଇ ସୁନାରେ ତିଆରି ହୋଇଥିବା କୃଷ୍ଣ ମୂର୍ତ୍ତିଟି ଚକ୍ ଚକ୍ କରୁଥିଲା ।

କୃଷ୍ଣ ମୂର୍ତ୍ତିଟିକୁ ନେଇ ସମସ୍ତ ଶ୍ରଦ୍ଧା ରଖିବା ପରେ ବୁଢା ଚାକରଟି କହିବାକୁ ଲାଗିଲା, "ହେ ଭଗବାନ ! ମୁଁ ମଣିଷ । ମୋ ମନ ଭିତରେ ନାନାପ୍ରକାର ଲୋଭ, ମାୟା ପୂରି ରହିଛି । ମତେ ରଜା ବହୁମାତ୍ରାରେ ବିଶ୍ୱାସ କରି ସବୁ ମୂଲ୍ୟବାନ ଜିନିଷ ମୋ ଜିମା ଛାଡ଼ି ଦେଇଛନ୍ତି; ମୁଁ



[ ବୁଢ଼ା ଚାକରଟି କୃଷ୍ଣ ମୂର୍ତ୍ତିଟିକୁ ହାତରେ ଧରି ନିବେଦନ କରୁଛି ]

ଯେପରି ଲୋଭରେ ପଡ଼ି ସେହି 'ମୂଲ୍ୟବାନ ଜିନିଷ' କିଛି ଚୋରି ନ କରେ ସେଥିପାଇଁ ଆପଣ ସଦ୍‌ବୁଦ୍ଧି ଦିଅନ୍ତୁ । ରାଜାଙ୍କ ସେବାକରି ମୋ ଜୀବନ ଧନ୍ୟହେଉ ।"

ରାଜା ଏତେବେଳେ ବୁଝିପାରିଲେ ଯେ ଭଗବାନ ଶ୍ରୀକୃଷ୍ଣଙ୍କୁ ପୂଜା କରିବା ପାଇଁ ତାଙ୍କର ବୁଢ଼ା ଚାକର ରାତି ଅଧରେ ଭଣ୍ଡାର ଘର ମଧ୍ୟରେ ପ୍ରବେଶ କରେ । ନିଜର ବିଶ୍ୱାସୀ ଚାକରର ଏଭଳି ଦେବଭକ୍ତି ଦେଖି ସେ ମନେ ମନେ ଖୁସିହେଲେ । ତା'ପରେ ସେ ସେହି ଭଣ୍ଡାର ଘରୁ ବାହାରି ଆସିଲେ ।

ବାହାରେ ଅନ୍ୟ ଚାକରଟି ରାଜାଙ୍କୁ ଅପେକ୍ଷା କରି ରହିଥିଲା । ରାଜା ବାହାରକୁ ଆସିବା ସଙ୍ଗେ ସଙ୍ଗେ ସେ ପଚାରିଲା, "ଆପଣ ଏଥର ନିଜେ ଆଖିରେ ବୁଢ଼ା ଚାକରର କାମ ଦେଖିଲେ । ସେ କପରି ଚୋରି କରୁଛି ତାହା ବୁଝି ପାରିବେ । ଏଣିକ ସେ ପୁରୁଣା ଚାକର ହେଲେ ମଧ୍ୟ ତାକୁ ଆପଣ ବିଶ୍ୱାସ କରିବା ଉଚିତ ନୁହେଁ ।"

ରାଜା ହସି ହସି ଉତ୍ତର ଦେଲେ, "ତୁମେ ଯାହାକୁ ଚୋର ବୋଲି କହୁଛ, ସେ ଚୋର ନୁହେଁ । ସେ ଭଗବାନ ଶ୍ରୀକୃଷ୍ଣଙ୍କ ପରମ ଭକ୍ତ । ଲୋଭ ଓ ମାୟା ତାକୁ ଛୁଇଁନାହିଁ । ତା'ଭଳି ଭୃତ୍ୟ ପାଖରେ ଥିଲେ କୌଣସି ବିପଦର ସମ୍ଭାବନା ନାହିଁ ।"

ରାଜାଙ୍କ ମୁହଁରୁ ଏଭଳି ଓଲଟା କଥା ଶୁଣି ଭୃତ୍ୟର ମୁହଁ ଚଳକୁ ହୋଇଗଲା । ରାଜା ଘର ମଧ୍ୟରେ ଥାଇ ଯାହା ଦେଖିଥିଲେ ତାହା ସବୁ ଗୋଟି ଗୋଟି କରି ବୁଝାଇଦେଇ କହିଲେ, "ସେ ବୁଢ଼ା ମୋର ଆଜିଠାରୁ ଆଉ ଚାକର ହୋଇ ରହିବ ନାହିଁ । ସେ ଏଣିକ ମୋର ବନ୍ଧୁ ଭଳି ଚଳିବ ।"

ବିଦ୍ୟାମାଧବଙ୍କୁ ଲୋକେ ବିସ୍ମରବନ୍ତ ରାଜା ବୋଲି କାହିଁକି କହୁଥିଲେ ସବୁକଥା ଶୁଣି ପାରିବା ପରେ ସାଧାରଣ ଭୃତ୍ୟ ତାହା ବୁଝିପାରିଲା ।






ରେଳଗାଡ଼ି ଆସ୍ତେ ଆସ୍ତେ ଚାଲୁଥାଏ ।

ରେଳଗାଡ଼ିର ଗୋଟିଏ ତୃତୀୟ ଶ୍ରେଣୀ ଡବାରେ ମାତ୍ର ଦୁଇଜଣ ଲୋକ ବସିଥାନ୍ତି । ରେଳଗାଡ଼ିଟି ପୁରୀରୁ ବାହାରି ହାଓଡ଼ା ଷ୍ଟେସନ ଆଡ଼କୁ ଯାଉଥାଏ । ଭୟଙ୍କର ବର୍ଷା ହେଉଥିବାରୁ ଗାଡ଼ିରେ ବେଶୀ ଲୋକ ନ ଥାନ୍ତି । ଅଧିକାଂଶ ଡବା ଖାଲି ପଡ଼ିଥାଏ ।

ସେହି ତୃତୀୟ ଶ୍ରେଣୀ ଡବାରେ ଦୁଇଜଣ ଲୋକଙ୍କ ମଧ୍ୟରୁ ଜଣେ ପ୍ରୌଢ଼, ବୟସ ପଇଁଚାଳିଶ ପାଖାପାଖି ହେବ । ତାଙ୍କ ମୁଣ୍ଡର ବାଳ ଭିତରୁ କେତେକ ବାଳ ପାଚି ଆସିଲାଣି । ତାଙ୍କ ନାମ ହେଉଛି ହରକିଶୋର । ସେ ଗୋଟିଏ ବେଞ୍ଚ ଉପରେ ବସି ବାହାରକୁ ଚାହିଁଥିଲେ । ବାହାରେ ଭୟଙ୍କର ବର୍ଷା ହେଉଥିଲା । ବର୍ଷା ପାଣିର ଛିଟିକା ଆସି ରେଳଡବାର କାଚ ବାଡ଼ା ଉପରେ ପିଟିହୋଇଯାଉଥିଲା ।

ସେହି ଡବାର ଅନ୍ୟ ଯାତ୍ରୀ ଜଣେ ଯୁବକ । ସେ ବେଞ୍ଚ ଉପରେ ବିଛଣା ବିଛାଇ ଶୋଇବାକୁ ଚେଷ୍ଟା କରୁଥିଲା । ବର୍ଷାଯୋଗୁଁ ଥଣ୍ଡାପବନ ବହୁଥିଲା । ଥଣ୍ଡା ପବନ ଯୋଗୁ ନିଦ ମାଡ଼ୁଥିବାରୁ ସେ ଶୋଇବାକୁ ଚେଷ୍ଟା କରୁଥିଲା । ଯୁବକ ଜଣକ ନାମ ସୁଧାକର । ପୁରୀ ସହରରେ ତାର ଘର ।

ପ୍ରୌଢ଼ ହରକିଶୋର ରେଳଡବା ବାହାରକୁ ମୁହଁ ଗଳାଇ ବସି ଭାବୁଥିଲେ, ଏ ବର୍ଷା ଦିନରେ ଜଣେ କେହି ସାଙ୍ଗ ମିଳିଲେ ଗପ କରିବାକୁ ସୁବିଧା ହୁଅନ୍ତା । ବରଷା ଦିନେ ଗପ କରିବାରେ ହରକିଶୋରଙ୍କର ଭାରି ସଉକ୍ । ସେ ପଛଆଡ଼କୁ ମୁହଁ ଫେରାଇ ଦେଖିଲେ, ସୁଧାକର ଯୋଡ଼ଯାଡ଼ ହୋଇ ଶୋଇବାକୁ ଯାଉଛି । ସେ ଭାବିଲେ, ଯଦି ସୁଧାକର ନ ଶୋଇ ଉଠି ବସନ୍ତା, ତା'ହେଲେ ତା' ସଙ୍ଗରେ ଗପ କରିବାକୁ ଭାରି ସୁବିଧା ହୁଅନ୍ତା । ଏହା ଭାବି ସେ ସୁଧାକରକୁ ଡାକ ପକାଇଲେ ।

ସୁଧାକରକୁ ନିଦ ଲାଗି ଆସୁଥିଲା । ହରକିଶୋର ଡାକରେ ତା'ର ନିଦ ଭାଙ୍ଗିଗଲା । ସେ ନିଦ ମଳମଳ ହୋଇ ଉଠିପଡ଼ି କହିଲା, ‘ତମେ କି ଅଭଦ୍ର ଲୋକ ହେ ! ମୁଁ ଶୋଇବାକୁ ଯାଉଛି । ତମେ ମତେ ଉଠାଇ ଦେଉଛ କାହିଁକି ?”

ସୁଧାକରର କଥା ଶୁଣି ହରକିଶୋରଙ୍କୁ ଭାରି ବାଧିଲା । ସେ ମନେ ମନେ ରାଗିଗଲେ । ରାଗକରି ସେ କହିଲେ, “ମୁଁ ଅଭଦ୍ର ହୋଇପାରେ, ହେଲେ ତମ ଭଳି ଚୋର ନୁହେଁ ।”

ସୁଧାକର କହିଲା, "ମୋତେ ଚୋର ବୋଲି ତୁମେ କହୁଛ କାହିଁକି ? ମୁଁ ତମର କିଛି ଜିନିଷ ଚୋରି କରିଛି କି ?"

ହରିକିଶୋର କହିଲେ, "ତମେ ଯଦି ଚୋର ନୁହଁ ମୋ ହାତ ଆଙ୍ଗୁଠିର ମୁଦିଟା ତମ ପକେଟରେ କେମିତି ଅଛି ?"

ହରିକିଶୋରଙ୍କ କଥା ଶୁଣି ସୁଧାକର ଆଶ୍ଚର୍ଯ୍ୟ ହେଲା । ସେ ଭୟଙ୍କର ରାଗରେ ରାଗିଯାଇ କହିଲା, "ତମର ତ ସାହସ କମ୍ ନୁହେଁ ଦେଖୁଛି ! ତମେ ମତେ ମୁଦି ଚୋର ବୋଲି କହୁଛ ? ତମେ ଯଦି ସେ କଥା ପ୍ରମାଣ କରି ନ ପାରିବ ତେବେ ବିଧା ଦେଇ ତମର ଦୁଇଟା ଦାନ୍ତ ମୁଁ ଝାଡ଼ିଦେବି ।"

ହରିକିଶୋର କହିଲେ, "ମୁଁ ମୋ କଥାର ପ୍ରମାଣ ଦେବାକୁ ରାଜି ଅଛି । ତମେ ତମ ଜାମା ପକେଟ ଭଲକରି ଦେଖ, ଯଦି ସେଥିରୁ ମୋ ନାମ ଲେଖାଥିବା ସୁନା ମୁଦିଟା ନ ବାହାରିବ, ତେବେ ମୁଁ ମୋ ହାତରେ ମୋ ଉପର ପାଟି ଗୁମ୍‌ଦାନ୍ତ ଦୁଇଟା ଝାଡ଼ିଦେବି । ତୁମକୁ କଷ୍ଟ କରି ବିଧା ମାରିବାକୁ ପଡ଼ିବ ନାହିଁ ।"

ହରିକିଶୋରଙ୍କ ପରିହାସ ଶୁଣି ସୁଧାକର ରାଗରେ ଜଳିଗଲା । ସେ ସାଙ୍ଗେ ସାଙ୍ଗେ ନିଜ ଜାମା ପକେଟ ଦୁଇଟା ଖୋଲି ଝାଡ଼ିଦେଲା । ଆଶ୍ଚର୍ଯ୍ୟ କଥା ଯେ ତା'ର ପକେଟରୁ ହଠାତ୍ ଗୋଟିଏ ସୁନାମୁଦି ବାହାରି ପଡ଼ିଲା । ସେ ମୁଦିରେ ପୁଣି ହରିକିଶୋରଙ୍କ ନାମ ଲେଖାହୋଇଥିଲା ।

ଏ ଘଟଣା ଦେଖି ସୁଧାକର ଅବାକ୍ । ତା' ଅଜାଣତରେ ତା' ପକେଟରେ ହରିକିଶୋରଙ୍କ ମୁଦି କିପରି ଆସିଲା ସେ ମୋଟେ ତାହା ବୁଝିପାରିଲା ନାହିଁ । ଦୁଃଖ ଓ ଅପମାନରେ ତା' ମୁହଁ କଳା ପଡ଼ିଗଲା । ପାଟିରୁ ଆଉ କିଛି କଥା ବାହାରିଲା ନାହିଁ ।

ସୁଧାକରର ଅବସ୍ଥା ଦେଖି ହରିକିଶୋର ମନେ ମନେ ଖୁବ ହସିଲେ । କହିଲେ, "ମୋ ମୁଦି ତମ ପକେଟକୁ କେମିତି ଗଲା ଜାଣିପାରିଲ ?"

ସୁଧାକର କହିଲା, "ମତେ କିଛି ଜଣାପଡୁନାହିଁ । ମୁଁ ଆଦୌ ତମ ମୁଦି ଚୋରି କରିନାହିଁ । ସେ ମୁଦି ମୋ ପକେଟକୁ ଆସିଲା କେମିତି ?"

ହରିକିଶୋର କହିଲେ, "ତମେ ଯଦି ଏ ବର୍ଷା ରାତିରେ ନ ଶୋଇ ମୋ ସାଙ୍ଗରେ ଗପ କରିବାକୁ ରାଜିହେବ ତା'ହେଲେ ମୁଁ ସେ କଥା କହିବି ।"

ସୁଧାକର ଗପ କରିବ ବୋଲି ରାଜି ହେଲା ।

ହରିକିଶୋର କହିଲେ, ମୁଁ ହେଉଛି ଜଣେ କୁହୁକବାଲା । କୁହୁକ ବଳରେ ମୁଁ ସବୁ କଥା କରିପାରେ । ସେଇ କୁହୁକଦ୍ଵାରା ମୁଁ ମୋ ମୁଦିଟି ତମ ପକେଟରେ ଭରି ଦେଇଥିଲି ।"

କୁହୁକ କଥା ଶୁଣି ସୁଧାକର ଆଶ୍ଚର୍ଯ୍ୟ ହୋଇଗଲା ।

ହରିକିଶୋର ପୁଣି କହିଲେ, "ଏମିତି କୁହୁକ ଦେଖାଇ ମୁଁ ବହୁ ଟଙ୍କା ରୋଜଗାର କରିଛି । ମୋ ଘର ବିହାର ପ୍ରଦେଶର ପାଟଣା ସହରରେ । କୁହୁକ ଦେଖାଇବା ପାଇଁ ଓଡ଼ିଶା ଆସିଥିଲି । ଏଇ ଯେଉଁ ବାକ୍ସ ଦେଖୁଚ, ସେ ବାକସରେ ଯେଉଁ ଟଙ୍କା ଅଛି, କୁହୁକ ଦେଖାଇ ମୁଁ ତାହା ରୋଜଗାର କରିଛି ।"

ହରିକିଶୋରଙ୍କ କଥା ସୁଧାକର ସବୁ ମନଦେଇ ଶୁଣୁଥିଲା । ତା ମୁଣ୍ଡରେ ଗୋଟିଏ ନୂଆ ବୁଦ୍ଧି ଡ଼ୁକିଲା । ସେ କହିଲା, "ତମେ ଯେଉଁ କୁହୁକ ସବୁ ଦେଖାଉଛ, ତାହା ଆମ ଦେଶରେ ଅନେକ ଲୋକ ଦେଖାନ୍ତି; କିନ୍ତୁ ମୁଁ ଆମେରିକାରୁ କେତେ ନୂଆ କୁହୁକ ବିଦ୍ୟା ଶିଖି ଆସିଛି । ତାକୁ ଯଦି ତମେ ଶିଖି ଅନ୍ୟ ପ୍ରଦେଶରେ ଯାଇ ଦେଖାଇବ, ତା'ହେଲେ ତମକୁ ଏତେ ଟଙ୍କା ମିଳିବ ଯେ ତିନିଟା ବାକ୍ସରେ ତମେ ତାହା ରଖିପାରିବ ନାହିଁ ।"

ସୁଧାକରର କଥା ଶୁଣି ହରିକିଶୋର ଭାରି ଖୁସି ହୋଇଗଲେ । ସେ କହିଲେ, "ଭାଇ ! ମତେ ଦୟାକରି ସେ ଆମେରିକା ଦେଶର କୁହୁକ ଦେଖାଇଲ ।"

ସୁଧାକର ଆମେରିକା ଦେଶର ଗୋଟିଏ କୁହୁକ ଦେଖାଇଲା ।" ସୁଧାକର କହିଲା, "ତାହେଲେ ତମେ ଦଶମିନିଟ୍ କାଳ ଆଖିବୁଜି ବସ । ଦଶମିନିଟ୍ ପରେ ତମେ ଯେତେବେଳେ ଆଖି ଖୋଲିବ ଦେଖିବ କୁହୁକ ବଳରେ ଏ ରେଳଗାଡ଼ି ଭିତରଯାକ ସୁନା, ହୀରା, ମାଣିକରେ ଭର୍ତ୍ତିହୋଇଥିବ ।"

ବାହାରେ ବର୍ଷା କମି ଆସିଥିଲା । ଗୋଟିଏ ଷ୍ଟେସନ ପାଖ ହୋଇ ଆସୁଥିବାରୁ ଟ୍ରେନ୍‌ର ଗତି ମଧ୍ୟ ମନ୍ଥର ହୋଇ ଆସୁଥିଲା । ଆମେରିକାର କୁହୁକ ବିଦ୍ୟା ବଳରେ ସୁଧାକର ରେଳଡବାରେ ହୀରା, ମାଣିକ ଭରିଦେବ ବୋଲି ଜାଣି ହରିକିଶୋର ଖୁବ୍ ଜୋର୍‌ରେ ଦୁଇ ଆଖିକୁ ବନ୍ଦ କରିଦେଲେ ।

ଷ୍ଟେସନରେ ଗାଡ଼ି ରହି ପୁଣି ଚାଲିବାକୁ ଆରମ୍ଭ କଲା । ଦଶମିନିଟ୍‌ରୁ ବେଶୀ ସମୟ ହୋଇ-ଯାଇଥିଲେ ମଧ୍ୟ ସୁଧାକର ହରିକିଶୋରଙ୍କୁ ଆଖି ଖୋଲିବାକୁ କହିଲା ନାହିଁ । ହରିକିଶୋର ବିରକ୍ତିରେ ପଚାରିଲେ, "ମୁଁ କେତେବେଳେ ଆଖି ଖୋଲିବି ସୁଧାକର ! କୁହୁକ ବଳରେ ତମେ କେତେ ସୁନା, ହୀରା ମାଣିକ ଡବାରେ ବିଛେଇ ଦେଲଣି ?"

ହରିକିଶୋରଙ୍କ କଥାର କିଛି ଉତ୍ତର ଆସିଲା ନାହିଁ । ଟ୍ରେନ୍ ସେତେବେଳକୁ ଖୁବ୍ ଜୋର୍‌ରେ ଦୌଡ଼ିବାକୁ ଆରମ୍ଭ କରିଥାଏ । ସୁଧାକର କିଛି ଉତ୍ତର ନ ଦେବାରୁ ବିରକ୍ତ ହୋଇ ହରିକିଶୋର ନିଜେ ଆଖି ଖୋଲିଦେଲେ ।

ଆଖି ଖୋଲିଦେଇ ହରକିଶୋର ଦେଖିଲେ କ'ଣ ?

ଡବା ଖାଲି । ସୁଧାକର ପଛ ଷ୍ଟେସନରେ ଓହ୍ଲାଇ ଯାଇଛି । ଗଲାବେଳେ ହରକିଶୋରଙ୍କ ଟଙ୍କା ବାକ୍ସଟିକୁ ମଧ୍ୟ ସାଙ୍ଗରେ ନେଇଯାଇଛି । ଛ'ମାସ ଜାଲ କୁହୁକ ଦେଖାଇ ଯେଉଁ ଟଙ୍କା ରୋଜଗାର କରିଥିଲେ ସେ ସବୁ ଟଙ୍କା ହରକିଶୋର ବାକ୍ସରେ ରଖିଥିଲେ ।

[ ହରକିଶୋରଙ୍କ ଟଙ୍କା ବାକ୍ସ ନେଇ ସୁଧାକର ପଳେଇ ଯାଉଛି ]

ସୁଧାକରର ଚତୁରପଣିଆ ହରକିଶୋର ବୁଝିପାରିଲେ । ସେ ରାଗରେ ଦାନ୍ତ କଡ଼ମଡ଼ କରି କହିଲେ, "ଆମେରିକା କୁହୁକ ନ ଦେଖାଇ ବୁଦ୍ଧିର କୁହୁକରେ ମତେ ଭେଳକିଟା ଠକିଦେଲା । ଓଃ, ମୁଁ କି ବୋକା ! ମିଛଟାରେ ଆଖି ଦୁଇଟାକୁ ବନ୍ଦ କରି ଏତେ କଷ୍ଟ ପାଇଲି । ଆଉ ସେ ମୋ ଟଙ୍କା ବାକ୍ସଟା ଧରି ସେତିକିବେଳେ ଷ୍ଟେସନରେ ଓହ୍ଲାଇଗଲା ।"

କିନ୍ତୁ ଟଙ୍କା ଫେରି ପାଇବା ପାଇଁ ହରକିଶୋରଙ୍କ ଆଉ କିଛି ଉପାୟ ନ ଥିଲା । ରେଳଗାଡ଼ି ସେତେବେଳେ ପବନ ବେଗରେ ଛୁଟିଚାଲିଥିଲା ।






ମଧୁପାଟଣା ଗୋଟିଏ ଛୋଟ ପଲ୍ଲୀଗ୍ରାମ । ସେହି ଗ୍ରାମରେ ମଦନମୋହନ ନାମକ ଜଣେ ବୋକା ଲୋକ ଥାଏ । ସେ ସୂତାକାଟି, ଲୁଗା ବୁଣି ପେଟ ପୋଷେ; କିନ୍ତୁ ଲୁଗାବୁଣାରୁ ତାକୁ ବେଶୀ ପଇସା ମିଳେ ନାହିଁ; ତେଣୁ ତାକୁ ଖୁବ୍ ଦୁଃଖରେ କାଳ କାଟିବାକୁ ହୁଏ ।

ଦିନେ ମଦନମୋହନ ବିଲ ଆଡ଼କୁ ଯାଇଥିଲା । ବିଲରେ ହୋଇଥିବା ଧାନ ଫସଲକୁ ଦେଖି ତା ମନରେ ଗୋଟିଏ ନୂଆ ଭାବନା ଦେଖାଦେଲା । ସେ ମନେ ମନେ ଭାବିଲା, ଖରାଦିନେ ଅଳ୍ପ ଧାନ ବିଲରେ ବୁଣିଦେଇ ଚାଷୀମାନେ ଶୀତଦିନେ ଖୁବ୍ ବେଶୀ ଫସଲ ପାଉଛନ୍ତି । ମୁଁ ଯଦି ସୂତାତକ ଏମିତି ବିଲରେ ପୋତି ଦିଅନ୍ତି, ତା ହେଲେ ସେ ସୂତାଗଛ ହେବେ ମୁଁ ତ ଅନେକ ସୂତା ପାଇପାରନ୍ତି ! ଏହା ଭାବି ସେ ଦିନେ ସୂତାତକ ନେଇ ବିଲରେ ମାଟିଖୋଳି ପୋତିଦେଲା । ସୂତାଗଛ ବିଳମ୍ବ ନ କରି ଚଞ୍ଚଳ ଉଠିବ ବୋଲି ତା ଉପରେ ପାଣି ଢାଳିବାକୁ ଲାଗିଲା ।

ଖରାଦିନ ଯାଇ ଶୀତଦିନ ଆସିଲା । ଚାଷୀମାନେ ଧାନ ଜମିରୁ ଆଉ ଥରେ ଲେଖାଏଁ ଫସଲ ଆମଦାନି କରିବାକୁ ଲାଗିଲେ, କିନ୍ତୁ ମଦନମୋହନର ସୂତା ଆଉ ମାଟିରେ ଗଜା ହୋଇ ଗଛ ହେଲା ନାହିଁ କି ସେଥିରେ ସୂତା ଫଳିଲା ନାହିଁ । ମନଦୁଃଖରେ ମଦନମୋହନ ମାଟି ଖୋଳି ଦେଖିଲା ଯେ ସୂତାତକ ମାଟିତଳେ ରହି ଖତ ହୋଇଯାଇଛି । ଏତେଗୁଡ଼ାଏ ସୂତା ଅକାରଣରେ ନଷ୍ଟ ହୋଇଯିବା ଦେଖି ମଦନମୋହନର ଖୁବ୍ ମନକଷ୍ଟ ହେଲା, କିନ୍ତୁ ସେ ନିଜ ଦୁଃଖ ଲାଜରେ ଆଉ କାହାରିକୁ କହିପାରିଲା ନାହିଁ ।

ଦିନେ ମଦନମୋହନ ମନଦୁଃଖରେ ମୁଣ୍ଡରେ ହାତଦେଇ ବସିଛି, ତାଙ୍କ ଗ୍ରାମର ସଦାନନ୍ଦ ଆସି ତା' ପାଖରେ ପହଞ୍ଚିଲା । ସଦାନନ୍ଦ କହିଲା, "ମଦନ ଭାଇ ! ମୋତେ ସମୟ ନାହିଁ । ସହରକୁ ଯାଇ ତମେ ମୋ ପାଇଁ କୋଡ଼ିଏ ଟଙ୍କାର ସୂତା କିଣି ଆଣି ପାରିବ ?"

ସଦାନନ୍ଦ କଥାରେ ମଦନମୋହନ ହଁ ଭରିଲା ।

ତା' ଆରଦିନ ସଦାନନ୍ଦଠାରୁ ଟଙ୍କା କୋଡ଼ିଏଟି ନେଇ ସେ ସହରକୁ ସୂତା କିଣିବାକୁ ବାହାରିଲା । ଯାଉଁ ଯାଉଁ ସେ ବାଟରେ ଦେଖିଲା ଜଣେ ଲୋକର ଗୋଟିଏ ହାତୀ ମରି ଯାଇଥିବାରୁ ସେ ମଲା ହାତୀ ପାଖରେ ଠିଆହୋଇ କାନ୍ଦୁଛି । ସେ ଲୋକଟି ପାଖକୁ ଆସି ଆଉ ଜଣେ ଲୋକ ପଚାରିଲା, "ହାତୀଟା ମରିଗଲା ବୋଲି ତୁମେ କାନ୍ଦୁଛ କାହିଁକି ?"

କାନ୍ଦୁଥିବା ଲୋକଟି ମନ ଦୁଃଖରେ କହିଲା, "ମୋ ହାତୀଟା ମରିଗଲା । ମୁଁ ଏହି ହାତୀଟା ଉପରେ ଚଢ଼ି ବ୍ୟବସାୟ କରୁଥିଲି । ସେହି ବ୍ୟବସାୟ ଟଙ୍କାରେ ଘର ଚଳାଉଥିଲି । ବର୍ତ୍ତମାନ ମୁଁ ନିଜେ ଚଳିବା ପାଇଁ ଟଙ୍କା ପାଇବି କେଉଁଠୁ ?"

ଅନ୍ୟ ଜଣେ ଲୋକ ତାକୁ ବୁଝାଇ କହିଲା, "ଭାଇ ! ହାତୀ ମରିଗଲା ବୋଲି ଦୁଃଖ କରିବାର କ'ଣ ଅଛି ? ହାତୀ ଜିଇଥିଲା ବେଳେ ସିନା ଲକ୍ଷେ ଟଙ୍କା; କିନ୍ତୁ ମରିଗଲା ପରେ ତ ତା'ର ମୂଲ୍ୟ ଦେଢ଼ଲକ୍ଷ ଟଙ୍କା ହେବ !"

ଏହି ଦୁଇ ଜଣ ଲୋକଙ୍କ କଥା ମଦନମୋହନ ମନଦେଇ ଶୁଣୁଥିଲା । ଦ୍ୱିତୀୟ ଲୋକର କଥା ଶୁଣି ସେ ପ୍ରଶ୍ନ କଲା, "ଭାଇ ! ଜିଅନ୍ତା ହାତୀଠାରୁ ମଲା ହାତୀର ମୂଲ୍ୟ ବେଶୀ କେମିତି ହେବ ?"

ଲୋକ ଜଣକ କହିଲା, "ମୃତ ହାତୀର ହାଡ଼ ଓ ଦାନ୍ତ ଭାରି ମୂଲ୍ୟବାନ । ହାତୀ ମରିଗଲେ ତା'ର ହାଡ଼ ଓ ଦାନ୍ତ ବିକ୍ରି କରାଯାଏ । ଧନୀ ଲୋକମାନେ ହାତୀ ଦାନ୍ତରେ ପଲଙ୍କ ତିଆରି କରନ୍ତି । ତମେ କ'ଣ ହାତୀଦାନ୍ତ ପଲଙ୍କ କଥା ମୋଟେ ଶୁଣିନାହିଁ ?"

ବହୁତ ଭାବଚିନ୍ତି ମଦନମୋହନ କହିଲା, "ହଁ ହଁ, ବୁଢ଼ୀମାଆ ରାଜାରାଣୀଙ୍କ ବିଷୟରେ ଗଳ୍ପ କହିଲା ବେଳେ ରାଜାଙ୍କର ହାତୀଦାନ୍ତ ପଲଙ୍କ ଥାଏ ବୋଲି କହେ ।"

ଦ୍ୱିତୀୟ ଲୋକ ଜଣକ ହସି ହସି କହିଲା, "ତୁମେ ଠିକ୍ ମନେପକାଇଛ । ଏହି ହାତୀଦାନ୍ତର ପଲଙ୍କ ଭାରି ମୂଲ୍ୟବାନ । ସେହି ପଲଙ୍କ ମୃତ ହାତୀମାନଙ୍କ ଦାନ୍ତରେ ତିଆରି ହୁଏ ।"

ମଦନମୋହନ ପଚାରିଲା, "ଆଚ୍ଛା ଭାଇ ! ହାତୀ ପୋଷିବା ଗୋଟିଏ ଲାଭଜନକ ବ୍ୟବସାୟ, ମୁଁ ପୋଷିବାକୁ ଚାହେଁ । ତା'ର ଡିମ୍ବ କେଉଁଠାରେ ମିଳିବ କହିପାରିବେ କି ?"

ତା' କଥା ଶୁଣି ଲୋକ ଜଣକ ମଦନମୋହନକୁ ନିର୍ବୋଧ ବୋଲି ଅନୁମାନ କରିପାରିଲା । ତାକୁ ଥଟ୍ଟା କରିବାପାଇଁ ସେ କହିଲା, "ହଁ ହଁ, ହାତୀର ଅଣ୍ଡା ବଜାରରେ ମିଳିବ ।"

ମଦନମୋହନ ପଚାରିଲା, "ବଜାରରେ କେଉଁଠୁ ମିଳିପାରିବ ?"

ପାଖରେ ଗୋଟିଏ ଫଳ ଦୋକାନ ଥିଲା । ସେଠାରେ ଅନେକ ତରଭୁଜ ବିକ୍ରି ହେବାପାଇଁ ଥୁଆ ହୋଇଥିଲା । ସେହି ତରଭୁଜ ଦୋକାନ ଆଡ଼କୁ ଆଙ୍ଗୁଠି ଦେଖାଇ ଦେଇ ଲୋକ ଜଣକ କହିଲା, "ସେହି ଦୋକାନରେ ହାତୀର ଡିମ୍ବ କିଣିବାକୁ ମିଳିବ ।"

ତରଭୁଜ ଦୋକାନ ପାଖରେ ପହଞ୍ଚି ତରଭୁଜଗୁଡ଼ିକ ଆଡ଼କୁ ଆଙ୍ଗୁଠି ଦେଖାଇ ମଦନମୋହନ ପଚାରିଲା, "ଏ ହାତୀଡିମ୍ବଗୁଡ଼ିକର ଦାମ୍ କେତେ ?"

ପ୍ରଥମେ ଲୋକଟି ମଦନମୋହନର କଥା କିଛି ବୁଝିପାରୁ ନଥିଲା । ହାତୀ କ'ଣ ଅଣ୍ଡା ଦିଏ ଯେ ସେ ବୁଝିପାରନ୍ତା ! କିନ୍ତୁ ଚଉଭୁଜ ଆଡ଼କୁ ଆଙ୍ଗୁଠି ଦେଖାଇ ମଦନମୋହନ ଯେତେବେଳେ ବାରମ୍ବାର ହାତୀଡିମ୍ବ ବୋଲି କହିଲା, ସେତେବେଳେ ସେ ଲୋକଟି ଗୋଟିଏ ନିପଟ ବୋକା ବୋଲି ବୁଝିପାରିଲା । ମଦନମୋହନକୁ ଠକିବା ଉଦ୍ଦେଶ୍ୟରେ ସେ କହିଲା, "ଛୋଟ ହାତୀ ଡିମ୍ବଗୁଡ଼ିକ ଦଶ ଟଙ୍କା ଏବଂ ବଡ଼ ହାତୀ ଡିମ୍ବଗୁଡ଼ିକର ମୂଲ୍ୟ କୋଡ଼ିଏ ଟଙ୍କା । ତମର କେଉଁଟି ଡିମ୍ବ ଦରକାର ?"

ସଦାନନ୍ଦ ଯେଉଁ କୋଡ଼ିଏ ଟଙ୍କା ସୂତା କିଣିବା ପାଇଁ ଦେଇଥିଲା ତାହା ମଦନମୋହନ ପାଖରେ ରହିଥିଲା । ସେ ଭାବିଲା, ହାତୀ ଡିମ୍ବ ଗୋଟିଏ ନେଲେ ସେଥିରୁ ହାତୀଛୁଆ ବାହାରିବ । ହାତୀ ଛୁଆ ବଡ଼ ହେଲେ ତା'ର ମୂଲ୍ୟ ଲକ୍ଷେ ଟଙ୍କା ହେବ । ତାହା ହେଲେ ସେ ଅଳ୍ପଦିନରେ ବଡ଼ଲୋକ ହୋଇଯିବ । ପ୍ରତିଦିନ ସୂତା କାଟି ତାକୁ ଲୁଗା ବୁଣିବାକୁ ପଡ଼ିବ ନାହିଁ । ଏହା ଭାବି କୋଡ଼ିଏ ଟଙ୍କା ଦେଇ ହାତୀଡିମ୍ବ ବୋଲି ଗୋଟିଏ ବଡ଼ ଚଉଭୁଜ କିଣି ଗ୍ରାମକୁ ଫେରି ଆସିଲା ।

ଗ୍ରାମ ଫେରନ୍ତି ବାଟରେ ଗୋଟିଏ ବଡ଼ ପୋଖରୀ ପଡ଼ିଲା । ମଦନମୋହନ ଦୁଇଦିନ ହେଲା ଗାଧୋଇ ନଥିଲା । ତେଣୁ ସେ ଚଉଭୁଜଟିକୁ ପୋଖରୀ କୂଳରେ ଥୋଇଦେଇ ଗାଧୋଇବାକୁ ଗଲା ।

ସେହି ପୋଖରୀ ହୁଡ଼ାରେ ଠେକୁଆ ରହିଥିଲା । ଚଉଭୁଜଟି ଥୁଆହୋଇଥିବା ଦେଖି ସେହି ଠେକୁଆ ତା' ନଖରେ ଖଣ୍ଡିଆ କରି ଖାଇବାକୁ ଲାଗିଲା । ସେହି ସମୟରେ ମଦନମୋହନ ପୋଖରୀରେ ଗାଧୋଇ ସାରି ଆସୁଥିଲା । ତାକୁ ଦେଖି ଆଖି ପିଛୁଡ଼ା ମାତ୍ରକେ ଠେକୁଆ ଦୌଡ଼ି ପଳାଇଗଲା ।

ଖଣ୍ଡିଆ ଚଉଭୁଜ ପାଖରୁ ଠେକୁଆଟି ଦୌଡ଼ି ପଳାଇବା ଦେଖି ମଦନମୋହନ ଭାବିଲା ବୋଧହୁଏ ହାତୀଡିମ୍ବ ମଧ୍ୟରୁ ହାତୀଛୁଆ ବାହାରି ପଳାଇଗଲା । ସେ ଆଖପାଖ ବୁଦାଆଡ଼କୁ ଯାଇ ଯେତେ ହାତୀଛୁଆକୁ ଖୋଜିଲା ଆଉ କେଉଁଠି ତା'ର ସନ୍ଧାନ ପାଇଲା ନାହିଁ ।

ମନଦୁଃଖରେ ଖଣ୍ଡିଆ ଚଉଭୁଜଟି ସାଙ୍ଗରେ ଧରି ମଦନମୋହନ ଘରେ ପହଞ୍ଚିଲା । ହାତୀଡିମ୍ବ ଭିତରୁ ହାତୀଛୁଆ ବାହାରି କିପରି ପଳାଇଗଲା, ସେ ସମସ୍ତ କଥା ତା'ର ନିଜ ସ୍ତ୍ରୀକୁ ବୁଝାଇ କହିଲା । ମଦନମୋହନଠାରୁ ସବୁ କଥା ଶୁଣିସାରି ତା'ର ସ୍ତ୍ରୀ କାନ୍ଦିବାକୁ ଲାଗିଲା । କାନ୍ଦି କାନ୍ଦି ସେ କହିଲା, "ହାତୀଛୁଆଟା ଥିଲେ ବଡ଼ ହୋଇଥାନ୍ତା । ମୁଁ ସେ ବଡ଼ ହାତୀ ଉପରେ ବସି ମୋ ବାପଘରକୁ ଯାଇଥାନ୍ତି ।"

ସ୍ତ୍ରୀ କଥା ଶୁଣି ମଦନମୋହନ ଭାରି ରାଗିଗଲା । ସେ ନିଜ ସ୍ତ୍ରୀକୁ ଗାଳିଦେଇ କହିଲା, "ତୁ ହାତୀ ଉପରେ ବସିଥିଲେ ତାକୁ ଭାରି କଷ୍ଟ ହୋଇଥାନ୍ତା । ସେ କଥା ଜାଣିପାରି ଡରରେ ସେ ହାତୀଛୁଆ ବୋଧହୁଏ ବଣକୁ ପଳାଇଗଲା ।"

ମଦନମୋହନ ଓ ତା'ର ସ୍ତ୍ରୀ ଏହିପରି କଳହ କରୁଥିବାବେଳେ ସଦାନନ୍ଦ ଆସି ପହଞ୍ଚିଲା । ଦାଣ୍ଡରେ ଥାଇ ସେ ଡାକ ପକାଇଲା, 'ହେ ମଦନ ଭାଇ ! ମୋ ସୂତା ଆଣିଥିବ, ଶୀଘ୍ର ଦେଇଯାଅ ।



[ ମଦନମୋହନ ଗାଧୋଇବାବେଳେ ଠେକୁଆଟି ତରଭୁଜ ଖାଇଯାଉଛି ]

ସଦାନନ୍ଦ ତାହା ଶୁଣି ମଦନମୋହନକୁ କିଛି ବୁଦ୍ଧି ଦିଶିଲା ନାହିଁ । ସେ ଦାଣ୍ଡକୁ ଆସି ସଦାନନ୍ଦର ଗୋଡ଼ତଳେ ପଡ଼ି ସବୁକଥା କହିଗଲା । ମଦନମୋହନ ମୁହଁରୁ ହାତୀଡ଼ିମ୍ବ କଥା ଶୁଣି ସଦାନନ୍ଦ ଆଶ୍ଚର୍ଯ୍ୟ ହେଲା । ସେ ମନେ ମନେ ଭାବିଲା, ଚଢ଼େଇ ବିନା ଡ଼ିମ୍ବ ଦିଅନ୍ତି, ହାତୀ ଗୋଟିଏ ପଶୁ ହୋଇ ଡ଼ିମ୍ବ ଦେଲା କେମିତି ? କିନ୍ତୁ ସେ ଯେତେବେଳେ ତରଭୁଜଟିକୁ ମଦନମୋହନ ହାତୀଅଣ୍ଡା କହୁଛି ବୋଲି ଜାଣିଲା, ସେତେବେଳେ ସେ ତା'ର ଅବୋଧତା ବୁଝିପାରିଲା ।

ମଦନମୋହନଙ୍କୁ ପାଖକୁ ଡାକି ସେ କହିଲେ, ତମେ କିଛି ମନ କଷ୍ଟ କରିବାର କାରଣ ନାହିଁ । ଏହି ହାଣ୍ଡି ତମ୍ବି ଭିତରେ ଯେଉଁ ଅସଲ ମଞ୍ଜି ଅଛି, ତାକୁ ନେଇ ବାରିରେ ପୋତି ଦିଅ । ସେ ମଞ୍ଜି ଗଛ ହେଲେ ସେଥିରେ ବହୁତ ହାଣ୍ଡିତମ୍ବି ଫଳିବ । ତମେ ତାକୁ ବଜାରରେ ବିକିଲେ ବହୁତ ଟଙ୍କା ରୋଜଗାର କରିବ । ସେତେବେଳେ ତମେ ମୋ'ଠାରୁ ଯେଉଁ କୋଡ଼ିଏ ଟଙ୍କା ନେଇ ଖର୍ଚ୍ଚ କରିଛ, ତାହା ଶୁଝିଦେବ ।"

ସଦାନନ୍ଦ କଥାମାନି ମଦନମୋହନ ମଞ୍ଜି ନେଇ ବାରିରେ ଲଗାଇଲା । ମଞ୍ଜି ଗଜା ହେବା ପରେ ସେଥିରେ ଖତ ଦେଇ ନିୟମିତ ଭାବରେ ପାଣିଦେଲା । ଅଳ୍ପଦିନ ମଧ୍ୟରେ ତରଭୁଜ ଲଟା ମାଡ଼ି ସେଥିରେ ଫଳ ହେଲା । ଗ୍ରାମରେ ମଦନମୋହନ ଜଣେ ଭଲ ତରଭୁଜ କୃଷୀ ହିସାବରେ ଜଣାଶୁଣା ହୋଇଗଲା । ତରଭୁଜ ବିକ୍ରୀକରି ସେ ସୁଖରେ ଚଳିଲା ।

